# ପୃଥିବୀର ଲୋକକଥା

( ପଞ୍ଜାବ )

[ ଦ୍ଵିତୀୟ ଭାଗ ]

ଶ୍ରୀ ଲକ୍ଷ୍ମୀଧର ମହାନ୍ତି, ବି. ଏସ୍. ସି., ଏଲ୍.ଏଲ୍. ବି.
ଓ. ଏସ୍. ଜେ. ଏସ୍. (ଅବସର)

ଶ୍ରୀମତୀ ଅନ୍ନପୂର୍ଣ୍ଣା ମହାନ୍ତି, ଏମ୍. ଏ., ବି. ଇଡ୍

ନୀଳକଣ୍ଠେଶ୍ୱର ଶିକ୍ଷା ପ୍ରକଳ୍ପ

# PRUTHIBIR LOKAKATHA
( Punjab Lokakatha )

Second Part

# ପୃଥିବୀର ଲୋକକଥା
( ପଞ୍ଜାବ ଲୋକକଥା )

ଦ୍ୱିତୀୟ ଭାଗ



ପ୍ରକାଶକ :

**ନୀଳକଣ୍ଠେଶ୍ୱର ଶିକ୍ଷା ପ୍ରକଳ୍ପ**
ଦଘାଳ, ପୋ: ଦଘାଳ, ପୁରୀ

ଦ୍ୱିତୀୟ ସଂସ୍କରଣ—ଇନ୍ଦ୍ର ପୂର୍ଣ୍ଣିମା, ୨୦୦୩

ପ୍ରଚ୍ଛଦପଟ—ଶ୍ରୀ ରବିନାରାୟଣ ନାୟକ

ମୁଦ୍ରଣ : **କେ.ବି.ଏସ୍. ପ୍ରିଣ୍ଟର୍ସ**
ଡଗରପଡ଼ା, କଟକ-୨

**ମୂଲ୍ୟ—୧୫ ଟଙ୍କା**

# ସୂଚୀପତ୍ର





# ନିବେଦନ

ଲୋକକଥା ଅଭିଜ୍ଞ ଲୋକଙ୍କର ଅନୁଭୂତିର କଥା । ସୁନାକୁ ଯେପରି ମାଟି ଖାଇପାରେ ନାହିଁ, ସମୟ ମଧ୍ୟ ଲୋକକଥାକୁ ଧ୍ୱଂସ କରିନାହିଁ । ପୃଥିବୀର ଲୋକକଥା ଯେ ଜାଣିବ, ସେ ବିଜ୍ଞ ହୋଇଯିବ । ସମସ୍ୟାର ସମ୍ମୁଖୀନ ହେବାକୁ ପଛେଇବ ନାହିଁ ।

ପୃଥିବୀର ଲୋକକଥା ଅଳ୍ପ କିଛି ଓଡ଼ିଆ ଭାଷାରେ ପ୍ରକାଶ ପାଇଛି । ଆମର ସଂଗୃହୀତ ଗଳ୍ପ ସଂଖ୍ୟା ପ୍ରାୟ ୭୦୦୦ । ସେ ସବୁ ଧାରାବାହିକ ଭାବେ ପ୍ରକାଶ ଆମେ କରିବାକୁ ଉଦ୍ୟମ କରୁଛୁ । ଶ୍ରେଷ୍ଠ ଶ୍ରେଷ୍ଠ ବହି ମାଧ୍ୟମରେ । ଏ ପର୍ଯ୍ୟନ୍ତ ଆମେ ୭୫ଟି ବହି ପ୍ରକାଶ କରିସାରିଲୁଣି ।

ସାଧାରଣ ଲୋକ ଆମର ଗରିବ । ଏହି ଶ୍ରେଷ୍ଠ ଶ୍ରେଷ୍ଠ ବହି କିଣି ଯେ ଏକାଠିକରି ପାରିବ, ସେ ସମୁଦାୟ ଲୋକକଥା ସେଠିକି ପାଇପାରିବ, ବାଧିବ ନାହିଁ ।

ସବୁ ଲୋକକଥା ଆମପକ୍ଷେ ସଂଗ୍ରହ କରିବା ସମ୍ଭବ ନୁହେଁ । ଯେ କୌଣସି ବଦାନ୍ୟ ବ୍ୟକ୍ତି ଆମକୁ ଏ ଦିଗରେ ସାହାଯ୍ୟ କଲେ ଆମେ ତାଙ୍କ ଠାରେ ଋଣୀ ହେବୁ ।

ଏ ଦିଗରେ ଆପଣଙ୍କର ସଦିଚ୍ଛା, ସହାନୁଭୂତି ଆଉ ସାହାଯ୍ୟ ଆମେ କାମନା କରୁଛୁ ।

ଲକ୍ଷ୍ମୀଧର ମହାନ୍ତି

ଫ

# ଦୁଇ ଭଉଣୀ

ମୀନା ଓ ବୀଣା । ଦୁଇଭଉଣୀ । ମୀନା ବଡ଼ । ବୀଣା ସାନ । ପିଲାଦିନୁ ସେମାନେ ମା ଛେଉଣ୍ଡ । ସ୍ତ୍ରୀ ସହିତ ଭାଇ ବିଦେଶରେ ଥାଏ । ଘରେ ବାପା ଏକା । ସେ ବି ବୁଢ଼ା । ପୁରୁଷ ଲୋକ । ଘର କରଣା ବିଷୟରେ ଅନଭିଜ୍ଞ । କାଲି କି କାଲି ଝିଅମାନେ ପରଘରକୁ ଯିବେ । ସେଥିପାଇଁ ସେମାନେ ଘରକରଣା ଶିଖିବା ନିହାତି ଦରକାର । ନହେଲେ, ଶାଶୁଘରେ ଗଞ୍ଜଣା ଖାଇବେ । ତା ଛଡ଼ା, ଝିଅ ବ'ଢ଼ା ଘରେ ରହିଲେ ସୁବିଧା ହେବ ନାହିଁ । ବରଂ ଅସୁବିଧା ବହୁତ । ଏସବୁ ଭାବି ଚିନ୍ତି ବାପା ତାଙ୍କର ସେମାନଙ୍କୁ ପିଇସୀ ପାଖରେ ଛାଡ଼ିଦେଇଥିଲେ ।

ସେମାନେ ଏକା ମା ପେଟର ଦୁଇଭଉଣୀ । ଗୋଟିଏ ବୃନ୍ତର ଦୁଇଟି ପୁଷ୍ପ । ଗଢ଼ଣ ଏକା । କିନ୍ତୁ ସେମାନଙ୍କର ରଙ୍ଗଢ଼ଙ୍ଗ ଚରିତ୍ର, ଓ ଚଳଣୀ ଅଲଗା; ଭିନ୍ନ । ଏମିତିକି, ସେମାନେ ଯେ ଏକା ମା ପେଟର ଦୁଇଭଉଣୀ, ତାହା ବିଶ୍ୱାସ କରିହୁଏ ନାହିଁ ।

ମୀନା ରୁକ୍ଷ । ବଦରାଗୀ । ମୁଖରା । ସ୍ୱାର୍ଥପର । ବୀଣା କିନ୍ତୁ ଭଦ୍ର, ମିଷ୍ଟଭାଷୀ, ଶାନ୍ତ ଆଉ ଦରଦୀ ।

ପିଇସୀଙ୍କ ଘରେ ଉଭୟେ ରହନ୍ତି । ମୀନା ବାପାଙ୍କ ନାଁ ଧରେ ନାହିଁ । କିନ୍ତୁ ବୀଣାର ବାପାଙ୍କ କଥା ଖୁବ୍ ମନେପଡ଼େ । ସବୁବେଳେ ସେ ବାପାଙ୍କ ବିଷୟରେ ଗପେ । ଦିନେ ସେ ମୀନାକୁ କହିଲା "କେତେଦିନ ହେଲା, ଆମେ ବାପାଙ୍କୁ ଦେଖିନାହୁଁ । ବାପାଙ୍କ କଥା ବହୁତ ମନେପଡୁଛି । ସେ ତ ଘରେ ଏକୁଟିଆ । ଚାଷ କାମ ଲାଗିରହିଥିବ । ଘରୁ ସେ ଗୋଡ଼ ବି ବାହାର କରିପାରୁନଥିବେ । ଚାଲ ଯିବା । ବାପାଙ୍କୁ ଟିକେ ଦେଖିଆସିବା ।"

ସାଣା କଥା ଶୁଣି ପିଇସୀ ଭାରି ଖୁସି । ବାପାଙ୍କ ପାଖକୁ ଯିବାକୁ ମୀନାକୁ ସେ ପ୍ରବର୍ତ୍ତାଇଲେ । ମୀନା କିନ୍ତୁ ରାଜି ହେଲନାହିଁ । ତାଁର ସାଣାକୁ କହିଲା-" ବୟସ ଅଧିକ ହେଲେ ମଣିଷ ହାଇରାଣ ହୁଏ । ବାପା ଆମର ବୁଢ଼ା । ହାଇରାଣ ହେବା ତାଙ୍କ ପକ୍ଷେ ସ୍ୱାଭାବିକ । ଏଇଟା ଖରାଦିନ । ତାତି ବୋହୁଛି । ଏ ଝାଞ୍ଜିରେ ଘରୁ ବାହାରିବା ମୁସ୍କିଲ, ବୁଢ଼ାବାପାକୁ ଦେଖିବାକୁ ମୁଁ ଏ ଝାଞ୍ଜି ଖରାରେ ଯାଇ-ପାରିବନାହିଁ । ତୁ ଯଦି ବାପା ସୋହାଗୀ ଦେଖେଇ ହେଉଛୁ, ତା' ହେଲେ ଏକୁଟିଆ ଚାଲିଯା । ମୋତେ ଡାକ ନାହିଁ ।"

ଅପାର କଥା ଛୁରି ଭଳି ସାଣା ଦେହରେ ଗଳିଗଲା । ସେ କାନ୍ଦି ପକାଇଲା । ପିଇସୀ ତାକୁ ସାନ୍ତ୍ୱନା ଦେଲେ ।

ବାପାଙ୍କୁ ଦେଖିବାକୁ ମନ ତାର ଉଚାଟ । ଏକୁଟିଆ ଯିବାକୁ ସେ ସ୍ଥିର କଲା । ପିଇସୀ ବି ରାଜି ହୋଇଗଲେ । ଖରାଦିନ ବଡ଼ି ଭୋରରୁ ସେ ବାହାରି ପଡ଼ିଲା । କିଛି ରୁଟି ଆଉ ଡାଲି ପିଇସୀ ତାର ବାଟରେ ଖାଇବାପାଇଁ ଦେଲେ ।

ସେ ଆଗରୁ କେବେ ଏକୁଟିଆ କୁଆଡ଼େ ଯାଇନଥିଲା । ପ୍ରଥମ ଥର ପାଇଁ ସେ ଯାଉଛି । ସେଥିପାଇଁ ଚାରିଆଡ଼କୁ ଅନାଇ ଅନାଇ ଧୀରେ ସୁସ୍ଥେ ସେ ଚାଲିଥାଏ ।

କିଛିବାଟ ଗଲାପରେ ତାକୁ ଭାରି ହାଲିଆ ଲାଗିଲା । ରାସ୍ତା କଡ଼ରେ ବଡ଼ କୋଳିଗଛଟିଏ । ଗୁମ୍ଫି ଗୁମ୍ଫିକିଆ ତାର ଗୁଳ । ସେଇଠି ସେ ଟିକେ ବସି ପଡ଼ିଲା । କୋଳିଗଛଟି ତାକୁ କହିଲା "ଝିଅ, ମୋ ଦେହ ଯାକ କଣ୍ଟା । ମୋତେ ଭାରି କଷ୍ଟ ହେଉଛି । କିଛି କଣ୍ଟା ଯଦି ତୁ ମୋ ଦେହରୁ କାଟି ଦିଅନ୍ତୁ ମତେ ଟିକିଏ ଭଲ ଲାଗନ୍ତା ।

ବାଣା ଗଛଟିକୁ ଅନେଇଲା । ସବୁଠୁ ସତ ତା ଦେହରେ ଅଗଣିତ କଣ୍ଟା । ବେଶ୍ ବଡ଼ ବଡ଼ । ସେ ଗଛରେ ଚଢ଼ି କଣ୍ଟାଗୁଡ଼ିକ ଭାଙ୍ଗିବାକୁ ଚେଷ୍ଟା କଲା । କଣ୍ଟାରେ ହାତ ତାର ଅଝୁଡ଼ ହୋଇ ରକ୍ତ ବାହାରିଲା । ତଥାପି ସେ ବିରକ୍ତ ହେଲା ନାହିଁ । ବହୁତ କଣ୍ଟା ସେ ଭାଙ୍ଗିଦେଲା । ତାପରେ ଗଛରୁ ଓହ୍ଲାଇ ତା ରାସ୍ତା ସେ ଧରିଲା ।

କିଛି ବାଟ ଗଲାପରେ ଯେ ଦେଖିଲା-ରାସ୍ତାକଡ଼ରେ ଚୂଲାଟିଏ । ତା ଉପରେ ହାଣ୍ଡିଟିଏ ବସିଛି । ସେଠି କେହି ନାହାନ୍ତି । ତାର କୌତୁହଳ ହେଲା । ସେ ପାଖକୁ ଯାଇ ଦେଖିଲା—ଲାଉଲା ଚୂଲାରେ ଡାଲି ବସିଛି । ଚୂଲାଟି ପାଉଁଶରେ ପୋତି ହୋଇଗଲାଣି । ସେତକ ଦେଖି ସେ ଚାଲିଯାଉଥିଲା । ପଛରୁ ଚୂଲାଟି ଡାକି କହିଲା—
—"ମୋ ମାଲିକାଣୀ ଡାଲି ବସେଇ ଦେଇ କାମକୁ ଯାଇଛି । ଆସିଲେ, ଖାଇବ । ପାଉଁଶରେ ମୁଁ ପୋତି ହୋଇଗଲିଣି । ଜାଳ ଆଉ ଜଳୁନାହି । ଡାଲି ବି ସିଝିପାରୁନାହିଁ । କଉଡ଼ିଆ ପଡ଼ିବାକୁ ଆରମ୍ଭ କଲାଣି । ମାଲିକାଣୀ ଖଟି ଖଟି ଆସିବ । ଦେହରେ ପେଟ ଜଳୁଥିବ । ଦେଖିବ, ଡାଲି ସିଝିନାହିଁ । ଭାରି ରାଗିବ । ମତେ ବି ଗାଳିଦେବ । ତୁ ଝିଅ ମତେ ଟିକିଏ ସାହାଯ୍ୟ କର । ଚୂଲାରୁ ପାଉଁଶ ତକ ବାହାର କରିଦେ । ମୁଁ ମୋର ଜଳିବି । ଡାଲିକୁ ସିଝାଇ ରଖିବି ।"

ବାଣା ଦରଦୀ । କାମକୁ ଯାଇଥିବା ସ୍ତ୍ରୀ ଲୋକଟି ପ୍ରତି ସେ ଦୟାର୍ଦ୍ର । ମାଲିକାଣୀ ପ୍ରତି ଚୂଲାଟିର ଶ୍ରଦ୍ଧା ଦେଖି ସେ ତନ୍ମୟ । ସେ ଚୂଲା ପାଖକୁ ଫେରିଲା । ଅଧା ପୋଡ଼ା କାଠ ସାହାଯ୍ୟରେ ପାଉଁଶ ତକ ବାହାର କରିଦେଲା । ଏଥର ଚୂଲାଟି ହୁ ହୁ ହୋଇ ଜଳିଲା । ଚୂଲାଟିର ସନ୍ତୋଷ, ତୃପ୍ତି ଆଉ ଆନନ୍ଦରେ ବାଣା ଅଭିଭୂତ ।

ଏଥର ବାଣା ପୁଣି ଆଗକୁ ଚାଲିଲା । କିଛି ବାଟ ଗଲାପରେ ସେ କ୍ଳାନ୍ତ ଅନୁଭବ କଲା । ରାସ୍ତା ପାଖରେ ଓସ୍ତଗଛ, ଝଙ୍କାଳିଆ ।

ଖୁବ୍ ବଡ଼ । ଛାଇ ତାର ସୁଶୀତଳ । ସେଠି ସେ ବିଶ୍ରାମ ନେଲା । ଉପରକୁ ଅନାଇ ଦେଖିଲା, ଗଛଟିର ଡାଳଟିଏ ଭାଙ୍ଗି ଝୁଲୁଛି । ଗଛଟି କହିଲା–"ମା ରାଣୀ, ମାଙ୍କଡ଼ ଡେଇଁ ଡାଳଟି ମୋର ଭାଙ୍ଗିଦେଲା । ଭଙ୍ଗା ଡାଳଟି ଓହଳୁଛି । ମୋତେ ଭାରି କଷ୍ଟ ହେଉଛି । ତାହାକୁ ଟିକିଏ ଟେକି ବାନ୍ଧିଦେଲେ, ମୋତେ ଆରାମ ଲାଗିବ ।"

ରାଣୀ କାହାରି କଷ୍ଟ ସହି ପାରେନାହିଁ । ଗଛର କାରୁଣ୍ୟରେ ସେ ବିଚଳିତ । ନିଜର ଓଢ଼ଣୀକୁ ଚିରି ଦେଇ ସେଥିରୁ ଖଣ୍ଡିକରେ ଓସ୍ତ ଡାଳକୁ ଟେକି ବାନ୍ଧିଦେଲା । ଏଥର ଗଛଟି ଆଶ୍ୱସ୍ତ । ରାଣୀ ତା ବାଟରେ ପୁଣି ଚାଲିଲା ।

ବାଟରେ ଝରଣାଟିଏ ପଡ଼ିଲା । ସେଥିରେ ପଙ୍କ ବହୁତ । ପାଣି ଯାଇ ପାରୁନାହିଁ । ଅଟକି ରହିଛି । ପାଣି ରାଣୀକୁ ଡାକି କହିଲା "ପଙ୍କ ପୋତିହୋଇ ମୋର ରାସ୍ତାବନ୍ଦ । ମୁଁ ସର୍ବଦା ଚଳଚଞ୍ଚଳ । ଏବେ ମୁଁ ସ୍ଥିର । ଏଇ ସ୍ଥିରତାରେ ମୁଁ ଅନଭ୍ୟସ୍ତ । ଏହା ବେଦନା ଦାୟକ । ଅଳ୍ପ ପଙ୍କ ଟିକିଏ ଆଡ଼େଇ ଦେଲେ, ମୁଁ ଚାଲିଯିବି । ତାଛଡ଼ା ପାଣି ନ ଯିବାରୁ ଝରଣାର ତଳମୁଣ୍ଡ ଶୁଖିଲା । ପାଣି ଟୋପାଏ ପିଇବାକୁ ମିଳୁ ନଥିବ । ଜୀବଜନ୍ତୁ ପାଣି ପାଇଁ ବ୍ୟସ୍ତ, ହା ହା କାର ହୋଇଯାଉଥିବେ । ପାଣିଗଲେ ସେମାନେ ଆଶ୍ୱସ୍ତ ହେବେ । ଶାନ୍ତି ପାଇବେ । ଏ ପୁଣ୍ୟ କାମପାଇଁ ଭଗବାନ ତୋର ମଙ୍ଗଳ କରିବେ ।"

ଝରଣା ବ୍ୟଥିତ । ରାଣୀ ତାହା ହୃଦୟଙ୍ଗମ କଲା । ଜମା ହୋଇଥିବା ପଙ୍କକୁ ଦୁଇ ହାତରେ ଆଡ଼େଇ ଦେଲା । ଏଥର ପାଣି କଳକଳ ହୋଇ ଝରଣାରେ ବୋହିଚାଲିଲା । ପାଣିର ବୋହିବାରେ ଯେଉଁ ଆନନ୍ଦ ତାହା ବର୍ଣ୍ଣନାତୀତ ।

ବାଟ ସାକ ବାଣୀ ଅଟକ ଅଟକ ଗଲା । ତେଣୁ ତାର ଡେରି ବହୁତ ହୋଇଗଲା । କିନ୍ତୁ ପର ପାଇଁ ସେ ଦୁଃଖୀ । ପରକାମରେ ସେ ବ୍ୟସ୍ତ । ନିଜର ବ୍ୟକ୍ତିଗତ ସ୍ୱାର୍ଥ ସେଥିରେ ନାହିଁ । ସେଥିପାଇଁ ସେ ଆନନ୍ଦ । ଏମିତିକି ଭୋକ ଶୋଷ ବି ହୋଇନାହିଁ । ସେ ସବୁ ଭୁଲିଯାଇଛି । କ୍ଳାନ୍ତି ବି ବିଶେଷ ଅନୁଭବ କରିନାହିଁ । ପିଇସୀ ଦେଇଥିବା ରୁଟି ଓ ଡାଲି ସେମିତି ଅଛି ।

ଘରେ ପହଞ୍ଚିଲା ବେଳକୁ ସନ୍ଧ୍ୟା । ବାପା ତାକୁ ଦେଖି ଭାରି ଖୁସି । ଅପୂର୍ବ ପାଇଲା ଭଳି ତାଙ୍କୁ ଲାଗିଲା । ତାଙ୍କର ଆନନ୍ଦ କହିଲେ ନ ସରେ । ବାପା ଖଟିଖଟି କ୍ଷେତରୁ ଆସିଥାନ୍ତି । ସେ ଭାରି କ୍ଳାନ୍ତ । ଭୋକିଲା ବି । ବାଣୀ ଦେଖିଲା, ଘରେ ଖାଇବାକୁ କିଛି ନାହିଁ । ପିଇସୀ ଦେଇଥିବା ରୁଟି ଆଉ ଡାଲି ବାପାଙ୍କୁ ସେ ବାଢ଼ିଦେଲା । ସେତକ ଖାଇ ବାପା ସନ୍ତୋଷ ।

ବାଣୀ ରାତିରେ ମସଲାଦେଇ ସୁଆଦିଆ ତରକାରି ରାନ୍ଧିଲା । ପାଖରେ ବସି ବଳାଇ ବଳାଇ ବାପାଙ୍କୁ ଖୁଆଇଲା । ସ୍ତ୍ରୀ ମଲାପରେ ବୁଢ଼ାଟି ନିଜ ହାତରେ ରାନ୍ଧେ । ଏକୁଟିଆ ଲୋକ । ତେଣୁ ଯାହା ତାହା ସିଝାଇ ଖାଇଦିଏ । ବାଣୀର ରନ୍ଧା ଖାଦ୍ୟ ଖାଇ ବୁଢ଼ା ଭାରି ଖୁସି । ପରିତୃପ୍ତ ।

ବାପା ପାଖରେ ଦି' ଚାରିଦିନ ରହି ବାଣୀ ପିଇସୀ ଘରକୁ ବାହାରିଲା । ବାପା ତାକୁ ନୂଆ ଲୁଗା ପିନ୍ଧାଇଲେ । ପଟେ ମଇଁଷି, ସୂତା କାଟିବାକୁ ଅରଟ, ବ୍ୟବହାର ପାଇଁ କିଛି ପିତଳ ବାସନ, ବିଛଣା ଚଦର ଆଉ ନଗଦ ଅମଳ ଗହମରୁ କିଛି ତାକୁ ଦେଲେ । ତାର ମନେହେଲା, ସତେ ଯେମିତି ସେ ପୁଅଣୀ ହୋଇ ଯାଉଛି ।

ଫେରିବା ବାଟରେ ଝରଣା । ଯେଉଁଠି ସୁନ୍ଦର ଓଢ଼ଣୀଟିଏ ଭାସୁଥିବାର ବାଣୀ ଦେଖିଲା । ଝରଣା କହିଲା—"ବାଣୀ ! ଗୋଟିଏ

ବୋହୂ ଗାଧୋଇ ଗ୍ଲଲଗଲା । ତା ଓଢ଼ଣୀଟି ନେବାକୁ ସେ ଭୁଲିଗଲା । ମୁଁ ସେଇଟି ତୋ ପାଇଁ ଘେନ ଆସିଛୁ । ତୁ ଏଇଟିକୁ ନେଇଯା ।"

ସାଣା ଓଢ଼ଣୀଟି ଉଠାଇ ଆଣିଲା । ସେଇଟି ତ ପାଣିରେ ଭସି ଭସି ଓଦା । ତେଣୁ ତାକୁ ଶୁଖାଇବାକୁ ମଇଁଷି ପିଠିରେ ପକାଇ ଦେଲା । ତା ବାଟରେ ସେ ପୁଣି ଗ୍ଲଲା ।

ଅଳ୍ପ ସମୟ ଭିତରେ ସେ ଓସ୍ତଗଛ ପାଖରେ ପହଞ୍ଚିଗଲା । ଆଶ୍ଚର୍ଯ୍ୟକଥା—ଯେଉଁ ଡ଼ାଳ୍ପ ଭାଙ୍ଗି ଯାଇଥିଲା, ସେଥିରେ ଗୋଟିଏ ମୁକ୍ତାହାର ଝୁଲୁଛି । ଗଛଟି କହିଲା "ମା ସାଣା, ରଜାଙ୍କ ପଗଡ଼ିରୁ ଏଇ ମୁକ୍ତାହାର ଖସି ପଡ଼ିଥିଲା । ମୁଁ ତାକୁ ସଂଗ୍ରହ କରି ତୋ ପାଇଁ ରଖିଛି । ତୁ ଏଇଟିକୁ ନେଇଯା ।"

ମୁକ୍ତାହାରଟି ସାଣା ଗଛରୁ ନେଇ ନିଜ ବେକରେ ଲମ୍ବାଇ-ଦେଲା । ମନ ତାର ଭାରି ଖୁସି । ଆନନ୍ଦରେ ସେ ଆଗକୁ ଗ୍ଲଲା । ସେ ଆସି ଚୂଲି ପାଖରେ ପହଞ୍ଚିଲା । ଚୂଲିଟି ଜଳୁଥାଏ । ଉପରେ ତାର ଗୋଟିଏ କଡ଼େଇ । ସେଥିରେ ବଡ଼ିଆ ସୁଆଦିଆ ଗୋଟିଏ ପିଠା । ଚୂଲିଟି ସାଣାକୁ ଦେଖି କହିଲା "ମା ସାଣା, ମୁଁ ତୋ ପାଇଁ ଏ ପିଠାଟି କରିଛି । ନେ ନିଜେ ଖାଇବୁ ଆଉ ତୋ ଭଉଣୀକୁ ଦେବୁ ।"

ସାଣା ସଦ୍ୟପ୍ରସ୍ତୁତ ଗରମ ପିଠାଟିକୁ ନେଲା । ତାକୁ ଦି ଭାଗ କଲା । ଖଣ୍ଡେ ଭଉଣୀ ପାଇଁ ରଖି ଆରଖଣ୍ଡକ ଖାଇଲା । ତା ପରେ ତା ବାଟରେ ସେ ଗ୍ଲଲା ।

କୋଳିଗଛ ପାଖରେ ପହଞ୍ଚି ଦେଖିଲା, ଗଛରେ କୋଳି ନଦି ହୋଇଛି । କୋଳି ସବୁ ପାଚିଲା ଟହ ଟହ । ଗଛଟି ସାଣାକୁ କହିଲା-"ତୁ ମୋ ଦେହରୁ କଣ୍ଟା କାଟି ସଫା କରିଛୁ । ତେଣୁ ଏ

କୋଳଯାକ ତୋର । ତୁ ଯେତେ ପାରିବୁ ନେଇଯା ।"

ସୀଣା କୋଳି ତୋଳିଲା । କିଛି ଓଢ଼ଣାରେ ମୀନା ପାଇଁ ବାନ୍ଧିଲା । ନିଜେ ବି କିଛି ଖାଇଲା । ଆଉ ଡେରି ନକରି ଘରକୁ ବାହାରିଗଲା ।

ଘରେ ପହଞ୍ଚିଲାବେଳକୁ ବେଳ ଗଡ଼ିଲାଣି । ମୀନା ଦେଖିଲା ସୀଣା ଫେରି ଆସିଛି । ସାଥିରେ ତାର ମଇଁଷି । ତା ଉପରେ ପିତ୍ତଳ ବାସନ, ଚରଖା ଓ ସଦ୍ୟ ଅମଳ ଗନ୍ଧମବସ୍ତା ଲଦା ହୋଇଛି । ତଟକା ସୁଆଦିଆ ପିଠା ଆଉ ପାଚିଲା କୋଳି ଓଢ଼ଣୀରେ ବନ୍ଧା ହୋଇଛି । ସୀଣାର ବେକରେ ମୁକ୍ତାହାର । ମୀନା ଦେଖିଲା— ସୀଣାର ସୌନ୍ଦର୍ଯ୍ୟ ଉଜ୍ଜ୍ୱଳ । ସେ ଇର୍ଷାରେ ଜଳିଗଲା । ପାଟିକରି କହିଲା—"ଚୋରଣୀ, ଘରକୁ ଯାଇଥିଲୁ । ଏ ସବୁ ବାପାଙ୍କର । ସେ ସବୁ ଚୋରି କରି ନେଇଆସିଛୁ । ମୁଁ ଯାଉଛି ଫିକି । ସବୁ କଥା ବାପାଙ୍କୁ କହିବି । ଦେଖିବୁ ତୋ ମୁହଁ ବାପା ଆଉ କେବେ ଚୁହିଁବେ ନାହିଁ ।"

ପରଦିନ ସକାଳୁ ମୀନା ବାପାଙ୍କ ପାଖକୁ ବାହାରିଲା । ଗଲାବେଳେ ପିଉସୀଙ୍କଠାରୁ ଅନୁମତି ତ ଦୂରର କଥା, ଯାଉଛି ବୋଲି କହିଲା ବି ନାହିଁ ।

ସୀଣା ଯେଉଁ ବାଟେ ଯାଇଥିଲା, ମୀନା ବି ଠିକ୍ ସେଇ ବାଟରେ ଗଲା ।

ବାଟରେ ପ୍ରଥମେ କୋଳି ଗଛ ପଡ଼ିଲା । ମୀନା ଦେଖିବାକୁ ଠିକ୍ ସୀଣା ପରି । ତଫାତ୍ ବେଶୀ କିଛି ନାହିଁ । ମୀନାକୁ ସୀଣା ବୋଲି ଠଉରାଇ କୋଳିଗଛ ମନେ ମନେ ଭାରି ଖୁସି । ସେ ମୀନାକୁ ଡାକି କହିଲା- "ଟିକିଏ ଏଠି ରହି ଯା ଭଉଣୀ । ତଳ କଣ୍ଟା ତ କାଟି ଦେଇଥିଲୁ । ଏଥର ଉପରେ କଣ୍ଟା କିଛି କାଟି ଦେ ।"

ଏ କଥା ଶୁଣି ମୀନା ରାଗରେ ପଞ୍ଚମ । ମୁହଁ ମୋଡ଼ି ଦେଇ କହିଲା "ତୋ ଦେହରେ ଯେତେ କଣ୍ଟା, ତାକୁ କାଟୁ କାଟୁ ମୋର ବେଳ ଚାଲିଯିବ । ମୁଁ ସେଇ ସମୟରେ ଦେଢ଼ କୋଶ ବାଟ ଚାଲିଯିବି । ତୁ ଗୋଟେ କଥା କର । ଓଟକୁ କଣ୍ଟା ଖୁଣ୍ଟିବାକୁ କହି ଦେ ।"

କୋଳି ଗଛଟି କହିଲା "ଓଟଟି କଣ୍ଟା ଖାଲି ଖାଇବ ନାହିଁ । କୋଳିତକ ବି ଖାଇଦେବ ।"

ମୀନା ତ ଉଦ୍ଧତ । ଗଛଟି କଥା ଶୁଣି ସେ ଦୁମ୍‌ଦୁମ୍ ହୋଇ ଚାଲିଗଲା । ଗଲାବେଳେ କହିଲା "ଅସମ୍ଭବ । ମୁଁ ତତେ ସାହାଯ୍ୟ କରିପାରିବି ନାହିଁ ।"

ଖାଣା ବିରୁଦ୍ଧରେ ଅଭିଯୋଗ କରିବା ମୀନାର ଲକ୍ଷ୍ୟ । ସେ ପୁଣି ଯେତେ ଶୀଘ୍ର ପହଞ୍ଚିବ ସେତେ ଭଲ । ତେଣୁ ସେ ଜୋର ଜୋରରେ ଚାଲୁଥାଏ ।

ସେ ଏହା ଭିତରେ ଆସି ଚୂଲିପାଖେ ପହଞ୍ଚି ଯାଇଥିଲା । ସେତେବେଳକୁ ପାଉଁଶରେ ଚୂଲିଟି ରୁଦ୍ଧ । ମୀନାକୁ ଦେଖି ସେ ବି ଖୁସି । ପାଉଁଶ କାଢ଼ି ବାହାର କରି ଦେବାକୁ ତା'ର ପୁଣି ଅନୁରୋଧ ।

ମୀନା ପ୍ରତି ଅନୁରୋଧ ଅପ୍ରତ୍ୟାଶିତ। ଅସହ୍ୟ । ତେଣୁ ସେ ରାଗରେ ନିଆଁ । ସେ କହିଲା—ଚୂଲି ଯେ ଲଗାଇ ଦେଇଯାଇଛି ତାକୁ କହ, ସେ ଆସି ପାଉଁଶ ବାହାର କରୁ । ମୁଁ ଘରକୁ ଯାଉଛି । ସଫାଲୁଗା ପିନ୍ଧିଛି । ପାଉଁଶ ବାହାର କରି ମୋ ଲୁଗାପଟା ମୁଁ ଅପରିଷ୍କାର କରିପାରିବି ନାହିଁ ।"

ଠିକଏ ଆଗରେ ଓସ୍ତଗଛ । ସେ ମୀନାକୁ ଦେଖି ସ୍ୱାଗତ କଲା । କହିଲା-"ଭଉଣୀ ତୋର ପରି ଝିଅଟିଏ । ଭାରି ଭଲ । ଦୟାକରି

ମୋ ଭଙ୍ଗା ଡାହ୍ନକୁ ବାନ୍ଧିଦେଇ ଯାଇଥିଲେ । ପବନରେ ତା ପୁଣି ହଲି ହଲି ହୁଗୁଳି ଗଲାଣି । ଆ, ଟିକଏ ଟାଣକରି ବାନ୍ଧଦେ ।”

ମୀନା କହିଲା “ରଖି ଦେ ତୋ ସୁଆଗ ମୋର ବେଳ ନାହିଁ । ତୋ ଡାଳ ସେମିତି ହଲୁଥାଉ ।”

ମୀନା ଭାବୁଥାଏ—ସଂଧ୍ୟା ପୂର୍ବରୁ ମୋତେ ବାପାଙ୍କ ପାଖରେ ପହଞ୍ଚିବାକୁ ହେବ । ବେଳ ଗଡ଼ି ଗଲାଣି । କଣ ହେଉଛି କେଜାଣି । ବାଟଯାକ ସମସ୍ତେ ଭାବୁଛନ୍ତି, ମୁଁ ତାଙ୍କ ଚାକରାଣୀ । ସମସ୍ତେ କାମ ବତାଉଛନ୍ତି । ବଡ଼ ଆଶ୍ଚର୍ଯ୍ୟ କଥା । ମୁଁ ତାଙ୍କ କାମ କରିବି ବୋଲି ସେମାନଙ୍କର ଆଶା ବି ପ୍ରବଳ । ଓସ୍ତଗଛ ଆଡ଼କୁ ପଛ କରି ସେ ଆଗେଇଗଲା ।

ବାଟରେ ଝରଣା । ତାର ବି ଅନୁରୋଧ-“ପଥପଡ଼ି ରାସ୍ତା ମୋର ବନ୍ଦ ହୋଇଯାଇଥିଲା । ଆଗରୁ ଝିଅଟିଏ ଏଇବାଟେ ଗଲାବେଳେ ସେ ସବୁ ସଫା କରି ଦେଇଯାଇଥିଲା । ଏବେ କେତେକ ଦୁଷ୍ଟ ପିଲା ଗୋଡ଼ିଗୁଡ଼ାକ ପକାଇ ରାସ୍ତା ବନ୍ଦ କରି ଦେଇଛନ୍ତି । ମା’ଟା ପରି, ଟିକେ ଆଡ଼େଇ ଦେ । ପାଣିତକ ଚାଲିଯାଉ । ଫସଲ କିଆରୀରେ ଲୋକେ ଚାହିଁ ବସିଥିବେ । ସେମାନେ ଟିକଏ ପାଣି ପାଆନ୍ତୁ ।”

ମୀନା କହିଲା “ନିଜ ପାଇଁ ସମସ୍ତେ ବ୍ୟସ୍ତ । ପରର ଅସୁବିଧା କାହାର ପ୍ରଣିଧାନ ହେଉ ନାହିଁ । ମୋର କାମ ଅଛି । ମୁଁ ଯାଉଛି । ଏଥର ଯେଉଁ ପିଲା ତୋତେ ପଥର ପକାଇବେ, ତାଙ୍କୁ ପାଣିରେ ବୁଡ଼େଇ ଦେବୁ । ସମସ୍ତଙ୍କର ଭୟ ହେବ । ଆଉ ପଥର କେହି ପକାଇବେ ନାହିଁ ।”

ଲମ୍ବା ଲମ୍ବା ପାଦ ପକାଇ ଶେଷରେ ସେ ଘରେ ପହଞ୍ଚିଗଲା । ସେତେବେଳକୁ ସନ୍ଧ୍ୟା ହେବାକୁ ବହୁତ ଡେରି । ବାପା ବାଲୁରୁ

ଫେର ନଥାନ୍ତ । ଘରେ ଭାଇ ଆଉ ଭାଉଜ । ବିଦେଶରୁ ଆସିଛନ୍ତି । ତାକୁ ଭାଇ ଦେଖି ଚିତ୍କାର କଲା—"ଓଃ ତୁ ପୁଣି ଆସିଗଲୁ !"

ଭାଉଜ କହିଲା—"ଖାଣ୍ଡା କାଲି ଗଲା । ଘରରୁ ଅଧେ ଜିନିଷ ଓ ମଇଁଷି ପଟେ ନେଇଗଲା । ତମେ ପୁଣି ଆଜି ଆସିଛ । ଫୁସୁଲାଇ କରି ଯାହା ବୁଢ଼ାଠାରେ ଅଛି, ତାକୁ ସବୁ ନେଇଯିବ ।"

ମୀନା ଧୂର୍ତ୍ତ । ଭାଉଜ ସାଥିରେ ତାଳ ଦେଇ କହିଲା—"ଖାଣ୍ଡା ସ୍ୱୈରଣୀ । ମୁଁ ଜାଣେ । ସେ ସବୁ ଜିନିଷ ସ୍ୱୈର କରି ନେଇଛି । ସେଇକଥା ତ ଜଣେଇବା ପାଇଁ ମୁଁ ଧାଇଁଆସିଛି ।"

ଭାଉଜ ମୀନାର ସଫେଇରେ ରାଗିଗଲା । କହିଲା—"ଥାଉ ଆଉ ଭଲେଇ ହୁଅନାହିଁ । ତମେ କେମିତି ଆମେ ଜାଣିଛୁ । ବାପା ତ ପିଇସୀକୁ ବାହା କଲାବେଳେ ସବୁ ଦେଲେ । ବାକି କିଛି ରଖି ନାହାଁନ୍ତି । ମା ମରିଗଲେ । ଅସୁବିଧା ହେଲା । ତେଣୁ ତମ ଦି ଭଉଣୀଙ୍କୁ ପିଇସୀ ଘରେ ଛାଡ଼ିଦେଲେ । ତୁମେ ଦି ଜଣ ଆସି ବାପାଙ୍କୁ ଫୁସୁଲା ଫୁସୁଲି କରି ସବୁ ବୋହି ନେଉଚ । ସେଇଠି ନେଇ ପୂରାଉଛ । ଭଲେଇ ହୋଇ କହୁଛ, କିଛି ଜାଣିନ । ଆଉ ଫୁସୁଲେଇବା ଦରକାର ନାହିଁ । ବୁଢ଼ା ଆସିବା ପୂର୍ବରୁ ତମେ ଏଠୁ ଚାଲିଯାଅ ।"

ମୀନା ରାଗିକରି ନଆଁ । ଧମକ ଦେଇ ସେ କହିଲା—"ରହ, ମୁଁ ବାପାଙ୍କୁ କହୁଛି, ତୁମେ କେମିତି ଆମ ଘରୁ ଆମକୁ ତଡ଼ି ଦେଉଛ । ଦେଖିବ ରୁହ' ବାପା କଣ କରିବେ ।"

ଭାଉଜ କହିଲା—"ତମେ ତ ସ୍ୱୈରଣୀ । ଜାତ ତମର ସାହାଣ-ହିଆ । ତୁମପରି ମୁଁ ଖରା କେହିନୁହିଁ । ନିଜ ଘରେ ତ ଚଳି ପାରୁନ, ପର ଘରେ କେମିତି ଚଳିବ ? କିଏ ତମକୁ ବାହା ହେବ ଲୋ ମା, କେଜାଣି । ଯାହା ଘରର ଯିବ, ତାର ସୁନାଘରକୁ ଚୂନା

କରିଦେବ । ଆଉ ଅପେକ୍ଷା କରି ଲାଭନାହିଁ । ଯାଅ ପିଉସୀ ଘରକୁ ଚାଲିଯାଅ ।"

ବାପଙ୍କର କଥା ତୀବ୍ର । କଟୁ । ଅସହ୍ୟ । ବେଦନା ଦାୟକ । ମୀନା ସହି ପାରିଲାନାହିଁ । ଘାଇ ଥିଲା । ତା ପାଇଁ ପଦେ ବି କହିଲା ନାହିଁ । ନିଜର ମୁହଁ ରଖିବାପାଇଁ ଘରୁ ଗୋଡ଼ କାଢ଼ି ବାହାରି ପଡ଼ିଲା । ବାପାଙ୍କୁ ଆଉ ଅପେକ୍ଷା କଲା ନାହିଁ ।

ସେ ଏକାକୀ । ରାତିର ଗାଢ଼ ଅନ୍ଧାର ଘୋଟି ଆସିଲାଣି । ମନ ତାର ଏକବାରକେ ମରିଯାଇଛି । ଆଖିରୁ ଧାର ଧାର ଲୁହ ବୋହି ଯାଉଥାଏ । ସେ ଏକା ନିର୍ଭୟରେ ଚାଲିଥାଏ । ଝରଣା ପାଖରେ ସେ ଆସି ପହଞ୍ଚିଗଲା । ଦେଖିଲା' ପାଣିରେ ଓଢ଼ଣୀଟିଏ ଭାସୁଛି । ଠିକ୍ ରାଣୀ ନେଇଥିବା ଓଢ଼ଣୀ ଭଳି । ସେ ତ ଲୋଭି । ଓଢ଼ଣୀଟି ନେବାକୁ ତାର ଭାରି ଇଚ୍ଛା । ତେଣୁ ସେ ପାଣି ଭିତରେ ପଶିଗଲା । ସେଠି ପାଣି ବହୁତ । ସୁଅ ବି ଖୁବ୍ ଟାଣ । ସୁଅରେ ଟାଣି ହୋଇ ସେ ପଡ଼ିଗଲା । ବୁଡ଼ି ମରିଥାନ୍ତା । ଭାଗ୍ୟ ଭଲ । ଢ଼ ଢୋକ ପାଣିପିଇ ରହିଗଲା । କଷ୍ଟେ ମଷ୍ଟେ କୂଳକୁ ଆସିଲା । ସେତେବେଳକୁ ସେ ଜୁଡୁବୁଡୁ ଓଦା ବଦଳାଇବାକୁ ତ ଆଉ ଲୁଗା ନାହିଁ । ତେଣୁ ସେମିତି ଓଦାରେ ସେ ପୁଣି ଚାଲିଲା ।

ତାପରେ ବାଟରେ ପଡ଼ିଲା ଓସ୍ତଗଛ । ରାଣୀ ସେଠୁ ହାର ପାଇଥିବାର ସେ ଜାଣିଥିଲା । ଲୋଭ ତ ତାର ଲାଗିଛି । ତେଣୁ ଗଛକୁ ଉର୍ଦ୍ଧ୍ୱ ଦେଖିଲା, ଗଛ ଡାଳରୁ ମୁକ୍ତାର ମାଳଟିଏ ଓହଳିଛି । ଠିକ୍ ରାଣୀହାର ଭଳି । ସେ ମାଳଟି ଆଣିବାକୁ ଡାଳଟିକୁ ଧରି ଟାଣି ଦେଲା । ଭାଗ୍ୟ ତାର ଖରାପ । ଡାଳଟି ଭାଙ୍ଗିଯାଇ ତା ମୁଣ୍ଡ ଉପରେ ପଡ଼ିଲା । ତାକୁ ଖୁବ୍ କାଟିଲା । ସେ କଏଁ ତଳେ ପଡ଼ିଗଲା । କଷ୍ଟେ ମଷ୍ଟେ ଉଠିଲା । ପଡ଼ିକରି ବି ଚେତିଲା ନାହିଁ ।

ଲୋଭ ତ ଲଗିଛି । ଉପରକୁ ଗ୍ଚହିଁଲା । ମାଳଟି କିନ୍ତୁ ସେଠି ଆଉ ନଥିଲା । ଦୁଃଖରେ ଓ ରାଗରେ ଜର୍ଜରିତ । ଲୁଭହେଲା ତଳେପଡ଼ି ଓଦାଲୁଗା ସବୁ ମଇଳା ହୋଇଗଲା ।

ସେଠି ଆଉ ସେ ଅପେକ୍ଷା କଲାନାହିଁ । ଖୁବ୍ ଜୋରରେ ପୁଣି ମାଡ଼ି ଗ୍ଚଲିଲା । ଅଳ୍ପ ସମୟ ଭିତରେ ସେ ଚୁଲି ପାଖରେ ପହଞ୍ଚି-ଗଲା । ସେତେବେଳକୁ ଭୋକରେ ତା ପେଟ ଜଳୁଥାଏ । ଦେଖିଲା, ସ୍ତ୍ରୀ ଲୋକଟିଏ ବସି ରୁଟି ସେକୁଚି । ମନରେ ତାର ଦମ୍ଭ ଆସିଲା । ପାଖକୁ ଯାଇ କହିଲା "ମାଉସୀ, ମୋତେ ଭାରି ଭୋକ । ଖାଇବାକୁ ରୁଟି ଖଣ୍ଡିଏ ଦେବ ?"

ସ୍ତ୍ରୀ ଲୋକଟି ତା କଥା ଶୁଣି ଶୁଣୁ ପାଟିକରି କହିଲା — "ପୋଡ଼ାମୁହିଁ । ଯା ଏଠୁ ବାହାର । ଚୁଲି କହୁଛି—ସେ ପାଉଁଶରେ ପୋତିହୋଇ ଯାଇଥିଲା । ପାଉଁଶ ଟିକିଏ କାଢ଼ି ଦେବାକୁ ତତେ ସେ ଅନୁରୋଧ କଲା । ତୁ ପାଉଁଶ ତ ବାହାର କଲୁନାହିଁ, ବରଂ ଦୁମ୍ ଦୁମ୍ ହୋଇ ଗ୍ଚଲିଗଲୁ । ତତେ ଲାଜ ମାଡୁନାହିଁ । ପୁଣି ଆସି ରୁଟି ମାଗୁଛୁ । ଯା ଅନ୍ୟଠୁ ରୁଟି ମାଗିକରି ଖାଇବୁ ।"

ମୀନାର ଆଉ କିଛି ଉପାୟ ନଥିଲା । ସେତେବେଳକୁ ବେଶ୍ ରାତି ହେଲାଣି । ତା ଦେହ ଟିକିଏ ବି ଚଳୁ ନଥାଏ । ପାଦକୁ ଘୋଷାଡ଼ି ଘୋଷାଡ଼ି ସେ ଗ୍ଚଲୁଥାଏ । ଏଣେ ଭୋକରେ ପେଟ ଜଳୁଥାଏ । ବହୁ କଷ୍ଟରେ ସେ କୋଳିଗଛ ପାଖରେ ପହଞ୍ଚିଲା । ମନ ତାର ଖୁବ୍ ଖୁସି, ଭାବିଲା—କୋଳି ଦିଟା ଖାଇ ଭୋକ ଅତ୍ୟନ୍ତ ମେଣ୍ଟାଇଦେବ । କୋଳି ତୋଳିବାକୁ ହାତ ବଢ଼ାଇଲା । କଣ୍ଟାରେ ହାତ ତାର ଆଞ୍ଚୁଡ଼ି ହୋଇଗଲା । ଯାହା ବା କୋଳି ତଳେ ପଡ଼ିଲା ଅନ୍ଧାରରେ ତାକୁ ସେ ପାଇଲା ନାହିଁ । ଆଉ ଅପେକ୍ଷା ନକରି ସେ ଘରକୁ ମୁହାଁଇଲା ।

ଘରେ ପହଞ୍ଚିଲା ବେଳକୁ ସେ ଅବସନ୍ନ, କ୍ଷୁଧାର୍ତ୍ତ ଓ କ୍ଳାନ୍ତ । କଣ୍ଟାରେ ଅଞ୍ଚୁଡ଼ି ହୋଇ ହାତ ତାର ରକ୍ତାକ୍ତ । ତେଣୁ ତାହା ଭୟଙ୍କର ପୋଡୁଥାଏ । ଏଣେ ଘୋଷାଡ଼ି ଘୋଷାଡ଼ି ପାଦ ଦ'ଟା ବି ଛିଣ୍ଡି ଯାଇଥାଏ । ସେ ଆସି ଘର ବାରଣ୍ଡାରେ ଧକ୍‌କା ମାରି ବସିପଡ଼ିଲା ।

ବାରଣ୍ଡାରେ ଶବ୍ଦ ଶୁଣି ରାଣୀ କବାଟ ଖୋଲି ପଦାକୁ ଆସିଲା । ମୀନାକୁ ଏପରି ଅବସ୍ଥାରେ ବାରଣ୍ଡାରେ ବସିଥିବାର ଦେଖି ସେ ବ୍ୟସ୍ତ ଓ ବ୍ୟଥିତ । ମୀନା ଝାଉଁଳି ପଡ଼ିଥାଏ । ପାଟିରୁ କଥା ବି ବାହାରୁ ନ ଥାଏ । ସେ ମୀନାର ହାତଧରି ଘରକୁ ନେଇ ଆସିଲା । ତା ପାଦ ଧୋଇଦେଲା । ତା ପରେ ରୁଟି, ଦହି ଓ ଡାଲି ଆଣି ତାକୁ ନିଜେ ଖୁଆଇଦେଲା ।

ବଡ଼ଭଉଣୀର ରାଗ ଏବେ ବି ମରିନି । ବରଂ ବଢ଼ିଯାଇଛି । କଥା ତାର ରୁକ୍ଷ । ସେ କହିଲା—"ତୁ ଚୋରଣୀ ନୁହଁ । ମୁଁ ହୁଏତ ଭୁଲ କହିଥିଲି ।"



# ଦୁଇ ଭାଇ

ବହୁତଦିନ ତଳର କଥା । ଜଣେ ରାଜାଙ୍କର ଗୋଟିଏ ରାଣୀ ଆଉ ଦୁଇଟି ପୁଅ ଥିଲେ । ପିଲା ଦୁଇଟିଙ୍କର ଚେହେରା ଭାରି ସୁନ୍ଦର ।।ରାଜା ତାଙ୍କୁ ଖୁବ୍ ଭଲ ପାଆନ୍ତି । ସେମାନଙ୍କର ଉଜ୍ଜ୍ୱଳ-ମୟ ଭବିଷ୍ୟତ ପାଇଁ ରାଜା ବ୍ୟାକୁଳ । ସେଥିପାଇଁ, ରାଜ୍ୟର ବଡ଼ ବଡ଼ ଗୁରୁଙ୍କ ଦ୍ୱାରା ତାଙ୍କୁ ସେ ତାଲିମ ଦେଉଥିଲେ ।

ଦୁଇଟି ଯାକ ପିଲା ଭାରି ବୁଦ୍ଧିଆ । ରାଜାପିଲାଙ୍କର ଯାହା ଶିଖିବାର କଥା, ସେମାନେ ଅଳ୍ପ ବୟସରେ ସେ ସବୁ ଶିଖିଗଲେ ।

ସୁଖ ସମୃଦ୍ଧିର ରହେ ନାହିଁ । ରାଣୀଙ୍କର ଅକାଳ ମୃତ୍ୟୁ ଘଟିଲା । ରାଜା ଦ୍ୱିତୀୟ ସ୍ତ୍ରୀ ଗ୍ରହଣ କଲେ ।

ନୂଆରାଣୀ ପିଲା ଦୁ'ଟାଙ୍କୁ ଦେଖି ସହି ପାରନ୍ତି ନାହିଁ । ତାଙ୍କୁ ଗହମ ଅଟା ବଦଳରେ ବାଜରା ଅଟାର ରୁଟି ଖାଇବାକୁ ଦିଅନ୍ତି । ବହୁ ସମୟରେ ତାଙ୍କର ତରକାରିରେ ଲୁଣ ବି ପଡୁ ନଥିଲା । ବେଳେ ବେଳେ ବାଜରା ଅଟାରେ ପିତା ଜିନଷ ମିଶାଇ ରୁଟିକରି ଖାଇବାକୁ ବି ଦିଆ ହେଉଥିଲା ।

ପିଲାମାନେ ପ୍ରଥମେ ପ୍ରଥମେ ସବୁ ସହିଗଲେ । ସହିବାର ଗୋଟିଏ ସୀମା ଅଛି । ଏଣିକି ସେମାନଙ୍କର ସହିବା ଶକ୍ତି ଲୋପ ପାଇଲାଣି । ସେମାନେ ପ୍ରତିବାଦ କଲେଣି । ତାହା ଶୁଣି ରାଣୀ କ୍ରୋଧାନ୍ୱିତ । ଖାଦ୍ୟରେ ଆଉ କୌଣସି ପରିବର୍ତ୍ତନ ହୋଇପାରିବ ନାହିଁ—ଏହା ଥିଲା ରାଣୀଙ୍କର ମନ୍ତବ୍ୟ । ବାପା ସେମାନଙ୍କର ଏକମାତ୍ର ଆଶା, ଭରସା । ଏକଥା ବାପାଙ୍କୁ ଜଣାଇବାରୁ ବାପା ବି କ୍ଷୁବ୍ଧ । ତାଙ୍କର ବିଶ୍ୱାସ -ନୂଆରାଣୀ ଯାହା କରୁଛନ୍ତି, ସେ ସବୁ ସେମାନଙ୍କର ମଙ୍ଗଳ ପାଇଁ । ପିଲାମାନେ ମିଛରେ ତାଙ୍କ ବିରୁଦ୍ଧରେ କହୁଛନ୍ତି । ମା କଥା ମାନିବାକୁ ସେମାନଙ୍କୁ ରାଜା କହିଲେ ।

ସାନଭାଇ ଦେଖିଲା ସାବତ ମା'ର ଅତ୍ୟାଚାର ଅସହ୍ୟ । ସେ ପୁଣି ଦିନକୁ ଦିନ ବଢୁଛି । ପ୍ରତିବାଦ କଲେ କେହି ଶୁଣୁ ନାହାନ୍ତି । ବରଂ ନିଜେ ଖରାପ ବୋଲି ପ୍ରମାଣିତ ହେଉଛି । ଦିନେ ସେ ବଡ଼ଭାଇକୁ କହିଲା—"ଭାଇରେ ! ଏଠି ରହି ଆଉ ଲାଭ ନାହିଁ । ଚାଲ, ପଳାଇବା ।" ବଡ଼ଭାଇ ପ୍ରଥମେ ପ୍ରଥମେ ଭାବୁଥିଲା-ବାପା ମଲେ ସେ ରାଜା ହେବ । ଦୁଃଖ ନ ସହିଲେ ସୁଖ ମିଳେ ନାହିଁ । ତେଣୁ ମାଟି କାମୁଡ଼ି ଏଠି ପଡ଼ି ରହିବାକୁ ସ୍ଥିର କରିଥିଲା । ସେଥିପାଇଁ ସେ ସାନଭାଇ କଥାରେ ଗୁରୁତ୍ୱ ଦେଉ ନଥିଲା ।

ବାରମ୍ବାର ଉପବାସ, ଉଆସ କର୍ମଚାରୀଗଣଙ୍କର ଦେଖା ଭିତର ଭାବ ଓ ରାଣୀଙ୍କର ତାଡ଼ନା ଦେଲକୁ ଦେଲ ଦୁର୍ବିସହ ହେଲାଣି । ସେମାନେ ଦେଖିଲେ—ରାଜ୍ୟ ଛାଡ଼ି ପଳାଇବା ଛଡ଼ା ଉପାୟ ନାହିଁ ।

ସେମାନେ ଜାଣନ୍ତି—ଖାଲି ପେଟରେ କୁଆଡ଼େ ଯିବା ଅନୁଚିତ । ପଳାଇଯିବା ଦିନ ରାତିରେ ସେମାନେ ପେଟେପେଟେ ଖାଇ ନେଲେ । ଶୋଇବା ବାହାନାରେ ବିଛଣାରେ ପଡ଼ିରହିଲେ ।

ରାତି ଅଧ ସମସ୍ତେ ନିଦରେ ଅଚେତ । ଚୁରିଆଡ଼େ ନିଶା ସାଇଁ ସାଇଁ ଗର୍ଜୁଛି । ଭାଇ ଦୁଇଟି ବିଛଣାରୁ ଉଠିଲେ । ନିଜକୁ ଘୋଡ଼ାଶାଳର ଚାକର ଭାବରେ ସଜାଇଲେ । ଘୋଡାଶାଳରେ ପଶିବାକୁ ଅସୁବିଧା କିଛି ହେଲା ନାହିଁ । ଦୁଇଟି ଭଲ ଭଲ ଘୋଡ଼ା ବାଛି ପଦାକୁ ଆଣିଲେ । ଘୋଡ଼ାଶାଳାର ଚାକର ଜରୁରି କାମରେ ରାତିରେ ଘୋଡ଼ା ବାହାରକୁ ଆଣନ୍ତି । ଏ କଥା ଜଗୁଆଳି ଜାଣେ । ତେଣୁ ସେ ସନ୍ଦେହ କିଛି କଲା ନାହିଁ । ଘୋଡ଼ା ଦୁଇଟି ଚଢ଼ି ସେମାନେ ପଳେଇଗଲେ । ଉଆସରେ ଏକଥା କେହି ଜାଣି ପାରିଲେ ନାହିଁ ।

ପରଦିନ ସକାଳ । ରାଜକୁମାରମାନେ ଉଆସରେ ନଥିବା କଥା ଜଣାପଡ଼ିଲା । ଏ ଖବର ଡେ଼ରିରେ ରାଜାଙ୍କ ପାଖରେ ପହଞ୍ଚିଲା । ତଥାପି ଚାରିଆଡ଼େ ଖୋଜା ପଡ଼ିଲା । କିନ୍ତୁ ସେମାନଙ୍କର ପତ୍ତା ମିଳିଲା ନାହିଁ ।

ଦୁଇଭାଇ ଘୋଡ଼ାକୁ ଖୁବ୍ ଜୋରରେ ଧପଉଇ ଦେଲେ ସେମାନଙ୍କର ବିଶ୍ୱାସ, ରାଜା ଲୋକ ପଠାଇ ତାଙ୍କୁ ଧରିନେବେ । ତେଣୁ ସେମାନେ ପୁରା ରାତିଟି କେଉଁଠି ବିଶ୍ରାମ ନେଲେ ନାହିଁ ।

ଏହା ଭିତରେ କିଛି ଦିନ ଚାଲିଗଲାଣି । ଦିନେ ରାତିରେ

ସେମାନେ ଗୋଟିଏ ଗଛ ମୂଳରେ ବିଶ୍ରାମ ନେଉଥାଆନ୍ତି । ସେଇ ଗଛ ଡାଳରେ ଗୋଟିଏ ପାରା ଆଉ ଗୋଟିଏ ଘରଚଟିଆ ବସି-ଥାଆନ୍ତି । ଘରଚଟିଆଟି ପାରାକୁ କହିଲା—"ଆମ ଭିତରେ ମୁଁ ବଡ଼ । ମୋତେ ଯେ ଖାଇବ ମନ୍ତ୍ରୀ ହେବ ।" ପାରାଟି ଘରଚଟିଆକୁ କହିଲା—"ତୁ ଜାଣିନୁ । ମୋତେ ଯେ ଖାଇବ, ସେ ରାଜା ହେବ । ତେଣୁ ମୁଁ ତୋ ଠାରୁ ବଡ଼ ।" ଦୁଇ ଭାଇ ଚଢ଼େଇ ଦୁଇଟିର କଥା ଶୁଣିଲେ । ସାଙ୍ଗେ ସାଙ୍ଗେ ଶର ଯୋଖି ସେମାନଙ୍କୁ ମାରିଦେଲେ ।

ବଡ଼ଭାଇ କହିଲା—"ସାବତ ମା ଯୋଗୁ ଆମେ ରାଜ୍ୟ ଛାଡ଼ିଲେ । ରାଜ୍ୟକୁ ଫେରିଯିବା'ର ପ୍ରଶ୍ନ ନାହିଁ । ମୋର ରାଜା ହେବା ଅସମ୍ଭବ, ତେଣୁ ମୁଁ ପାରା ମାଂସ ଖାଇବ ନାହିଁ । ଆ ଦୁହେଁଯାକ ଚଢ଼େଇ ଦୁଇଟିକୁ ଭାଗ ବାଣ୍ଟି ଖାଇବା ।"

ସାନ କିନ୍ତୁ ବେରାଜି । ସେ କହିଲା—"ସଂସାର ଗତିଶୀଳ । ଅସ୍ଥିର । ଆଜିକଥା କାଲିକୁ ରହେନାହିଁ । କାଲି ଆମ ମା ଥିଲା, ଚାଲିଗଲା । ଆମେ ରାଜପୁତ୍ର । ପିତା ଆମର ଜୀବିତ । ରାଜା । ତଥାପି ଆମେ ଦାଣ୍ଡର ଭିକାରୀ । ସେମିତି ସାବତ ମା କାଲି ବି ମରିବ । ଲୋକେ ଚାହିଁବେ, ଆମକୁ ରାଜ୍ୟ ବି ମିଳିଯିବ । ତୁ ପାରାମାଂସ ଖାଇଥା କି ରାଜା ହେବୁ । ମୁଁ ତ ସାନ । ତୋ ପାଖେ ପାଖେ ଲାଗି ରହିଛି । ତୋର ମନ୍ତ୍ରୀ ହେବ । ମୁଁ ଘରଚଟିଆ ମାଂସ ଖାଇବ ।"

ବଡ଼ ପ୍ରଥମେ ପ୍ରଥମେ ଅରାଜି ହେଉଥିଲା । ସାନର ବାଧ ବାଧକତାରେ ସେ ପାରା ମାଂସ ଖାଇବାକୁ ରାଜି ହେଲା । ସାନ ଶୁଖିଲା-ପତ୍ର ଗୋଟାଇ ଆଣିଲା । ଚଢ଼େଇ ଦୁଇଟିକୁ ପୋଡ଼ିଦେଲା ।

ବଡ଼ ଘାଗ୍ ମାଂସ ଓ ସାନ ଘର ଚଟିଆ ମାଂସ ଖାଇଲେ । ତା ପରେ ଟିକିଏ ବିଶ୍ରାମ ନେଇ ସେମାନେ ପୁଣି ଯାତ୍ରା ଆରମ୍ଭ କଲେ ।

କିଛିବାଟ ଗଲାପରେ ବଡ଼ ଦେଖିଲା ସେ ତାର ଘୋଡ଼ା ଗୁଣ୍ଠଟି ନାହିଁ । ସମ୍ଭବ, ବିଶ୍ରାମ ନେବା ଗଛ ମୂଳରେ ଗୁଣ୍ଠ ଆସିଛି । ସେ ସାନକୁ ଟିକିଏ ଅପେକ୍ଷା କରିବାକୁ କହି ଗୁଣ୍ଠ ଆଣିବାକୁ ବାହାରିଲା ।

ସାନ କହିଲା—"ଭାଇ ଆପଣ ରାଜା, ମୁଁ ଆପଣଙ୍କର ମନ୍ତ୍ରୀ । ମୁଁ ଥାଉ ଥାଉ ଆପଣ ଗୁଣ୍ଠ ଆଣିବାକୁ ଯିବେ, ଏଇଟା ସୁନ୍ଦର ହେବନାହିଁ । ଲୋକେ ଶୁଣିଲେ ହସିବେ । ତେଣୁ ମୁଁ ଯାଉଛି । ଆପଣ ଏଇଠାରେ ଅପେକ୍ଷା କରନ୍ତୁ ।" ବଡ଼ଭାଇ ସମ୍ମତ ହେଲା । ସାନ ବାହାରି ଗଲା ।

ଯେଉଁ ଗଛ ମୂଳରେ ସେମାନେ ବିଶ୍ରାମ ନେଉଥିଲେ' ସେଠି ଗୋଟିଏ ଭୟଙ୍କର ବିଷାକ୍ତ ସାପ ରହେ । ସାନ ଭାଇକୁ ଏକୁଟିଆ ଆସୁଥିବାର ଦେଖି ସେ ଲୁଚି ଲୁଚି ଗଛ ମୂଳକୁ ଗଲା । ଗୁଣ୍ଠ ପାଖରେ ଅପେକ୍ଷା କଲା । ସାନ ଯେମିତି ଘୋଡ଼ାରୁ ଓହ୍ଲାଇ ଗୁଣ୍ଠ ଉଠାଉଛି ସେତିକିବେଳେ ତାକୁ ସେ ଚୋଟେ ମାରିଲା । ମୁହୂର୍ତ୍ତକ ମଧ୍ୟରେ ସବୁ ଶେଷ । ସାନ ଭାଇର ଶବଟି ସେଠାରେ ପଡ଼ିରହିଲା । ଏଣେ ବଡ଼ଭାଇ ଅପେକ୍ଷା କରି କରି ନିଶ୍ଚେଷ୍ଟ । ବେଳ ଗଡ଼ି ରାତି ହେଲା । ସାନର ଦେଖାନାହିଁ । ଏପରି ନିର୍ଜନ ସ୍ଥାନରେ ଏକାନ୍ତ ରାତି କଟାଇବା ବିପଦଜନକ । ସାନକୁ ରାତିରେ ଖୋଜିବା ମଧ୍ୟ ଦୁଃସାହସିକ ପଦକ୍ଷେପ । ବାଧ୍ୟ ହୋଇ ସେ ନିକଟସ୍ଥ ଜନ ବସତିରେ ରାତିଟି କଟାଇଲା । ତାକୁ ନିଦ ହେଲାନାହିଁ । ସବୁବେଳେ ସେ ଉଦ୍‌ବିଗ୍ନ । ସାନଭାଇ କଥା ସେ ବାରବାର ଭାବୁଥାଏ । ରାତି

ପାହ୍ନିବା ପୂର୍ବରୁ ସେ ସାନ ଭାଇକୁ ଖୋଜିବାକୁ ବାହାରି ପଡ଼ିଲା । ଜାଙ୍ଗୁଲୁ ଜାଙ୍ଗୁଲୁ ଅନ୍ଧାରରେ ସେ ବାଟ ଭୁଲିଗଲେ । ବିଶ୍ରାମସ୍ଥଳୀ ଗଛ ବାଟରେ ନ ଯାଇ ଅନ୍ୟ ବାଟରେ ଚାଲିଗଲା ।

ସେ ଯାଇ ଅନ୍ୟ ଏକ ରାଜ୍ୟରେ ପହଞ୍ଚିଲା । ସେ ଦେଶର ରାଜା ମୃତ । ସନ୍ତାନହୀନ । ଉତ୍ତରାଧିକାରୀ ଶୂନ୍ୟ । ସେଥିପାଇଁ ସମସ୍ତେ ନୂଆ ରାଜା ଖୋଜିବାରେ ବ୍ୟସ୍ତ ।

ସେ ଦେଶରେ ଏକ ଅଭିନବ ପ୍ରଥା ଅଛି । ରାଜା ନିଃସନ୍ତାନ ହେଲେ ପାଟ ଧଳା ହାତୀକୁ ଅଣା ହେବ । ସେ ଯାହାକୁ ସମ୍ମାନ ଦେବ, ସେ ରାଜା ହେବ ।

ସାରା ରାଇଜର ଲୋକ ଆସିଲେଣି । ପାଟ ଧଳାହାତୀ ସମ୍ମାନ ଦେବାତ ଦୂରର କଥା କାହାକୁ ଅନାଉ ବି ନାହିଁ । ଏବେ ବିଦେଶୀଙ୍କ ପାଳି । ଯେ ଏ ଦେଶକୁ ଆସୁଛି ତାକୁ ଧରି ନେଇ ହାତୀ ପାଖରେ ହାଜର କରାହେଉଛି ।

ରାଜପୁଅଟି ଏହି ରାଜ୍ୟରେ ଯେମିତି ପହଞ୍ଚିଛି, ରାଜାଙ୍କ ଲୋକ ତାକୁ ଧରି ନେଲେ । ବାଟରେ ସବୁକଥା ବୁଝାଇ କହିଲେ । ତାପରେ ତାକୁ ଧଳାହାତୀ ପାଖକୁ ଅଣାଗଲା ।

ସମସ୍ତେ ଆଶ୍ଚର୍ଯ୍ୟ । ରାଜପୁଅକୁ ଦେଖି ଧଳାହାତୀ ଉଠିଲା । ଆସ୍ତେ ଆସ୍ତେ ରାଜପୁଅ ପାଖକୁ ଆସି ଆଣ୍ଠୁମାଡ଼ି ତାକୁ ସମ୍ମାନ ଦେଲା । ଶୁଣ୍ଢରେ ତାକୁ ଉଠାଇ ହାଉଦାରେ ବସାଇ ଦେଲା ।

ଚାରି ଆଡ଼େ ଆନନ୍ଦର କୋଳାହଳ । ସମସ୍ତେ ଖୁସି । ସାଙ୍ଗେ ସାଙ୍ଗେ ଅଭିଷେକ ହେଲା ।

ରାଜା ଗାଦିରେ ବସିବା ସାଙ୍ଗେ ସାଙ୍ଗେ ସେ ଲୋକ ପଠାଇ ସାନ ଭାଇକୁ ଖୋଜାଇଲେ । କୌଣସି ପତ୍ତା ମିଳିଲା ନାହିଁ । ବାଧ

ହୋଇ ଅନ୍ୟ ଜଣକୁ ମନ୍ତ୍ରୀକଲେ । ରାଜ୍ୟ ଶାସନରେ ସେ ସବୁ-ବେଳେ ବ୍ୟସ୍ତ । ଫୁରୁସତ୍ ପାଇଲେ ସାନଭାଇ କଥା ମନେପଡ଼େ । ଦୁଃଖରେ ସେ ଅଭିଭୂତ ହୋଇପଡ଼ନ୍ତି ।

ଏଣେ ସାନ ଭାଇର ପ୍ରାଣହୀନ ପିଣ୍ଡ ପଡ଼ିଥାଏ । ଅଳ୍ପ ଦୂରରେ ଘୋଡ଼ାଟି ଘାସ ଚରୁଥାଏ । ସେଇବାଟେ ଜଣେ ଗୁଣିଆ ଓ ତା ସ୍ତ୍ରୀ ଯାଉଥିଲେ । ପୋଷା ଘୋଡ଼ାଟି ଚରୁଥିବା ଦେଖି ସେମାନେ ଆଶ୍ଚର୍ଯ୍ୟ ହେଲେ । ସେମାନେ ଗଛ ମୂଳକୁ ଗଲେ । ଦେଖିଲେ—ଗୋଟିଏ ପ୍ରାଣହୀନ ସୁନ୍ଦର ଯୁବକ ପଡ଼ିଛି । ପାଟିରୁ ତାର ଗରଳ ବୋହୁଛି । ବିଷାକ୍ତ ସାପର ଦଂଶନରେ ଯୁବକଟିର ଯେ ମୃତ୍ୟୁ ହୋଇଛି ଏଥିରେ ତାଙ୍କର ସନ୍ଦେହ ଆଉ ରହିଲା ନାହିଁ ।

ଗୁଣିଆର ସ୍ତ୍ରୀ ଭଲଲୋକ । ଯୁବକର ମୃତ୍ୟୁପାଇଁ ସେ ବ୍ୟଥିତ । ଯୁବକଟିକୁ ବଞ୍ଚାଇବାକୁ ସେ ତା ସ୍ୱାମୀକୁ ଅନୁରୋଧ କଲା । ପ୍ରଥମେ ଗୁଣିଆ ରାଜି ହେଉନଥିଲା । କହିଲା—"ଭୟଙ୍କର ବିଷଧର ସର୍ପର ଦଂଶନରେ ଏହାର ମୃତ୍ୟୁ ହୋଇଛି । ସହଜରେ ବିଷ ଛାଡ଼ିବ ନାହିଁ ।" କିନ୍ତୁ ସ୍ତ୍ରୀର ଜିଦ୍ ଯୋଗୁ ଶେଷକୁ ଯୁବକକୁ ଭଲ କରିବାକୁ ରାଜି ହେଲା ।

ତା ପରେ ତା ସ୍ତ୍ରୀକୁ କହିଲା—"ଯା ଝରଣାରୁ ପାଣିଆଣ ମୁଁ ଗୁଣି କରିବି ।"

ସ୍ତ୍ରୀ ପାଖ ଝରଣାକୁ ଗଲା । ସେଠି ଟୋପେ ବି ପାଣି ନାହିଁ । ଝରଣାଟି ଶୁଖିଲା । ସେ ସେଠୁ ଫେରିଆସି ତା ସ୍ୱାମୀକୁ ସେ କଥା କହିଲା । ଗୁଣିଆଟି କହିଲା "ଚାଲ ଘରକୁ ଯିବା ; ସେଇଠି ପୂଜା କଲେ, ଯୁବକଟି ଭଲ ହେଇଯିବ ।" ଉଭୟ ଘରକୁ ଫେରିଗଲେ ।

ଝରଣାଟି ସମ୍ପୂର୍ଣ୍ଣ ଶୁଷ୍କ । କେଉଁଠି ହେଲେ ଟୋପେ ପାଣିନାହିଁ । ଦଂଶନ କରିଥିବା ବିଷଧର ସାପର ଛୁଆଟିଏ ଥିଲା । ପାଣି ନ ପାଇ

ସେମାନେ ଆଉଟୁ ପାଉଟୁ । ପିଲ୍ଲାଙ୍କର କଷ୍ଟ ସାପଟି ସହି ପାରିଲା ନାହିଁ । ନିଜେ ଝରଣା ପାଖରେ ଖୁବ୍ ଏପଟ ସେପଟ ହେଲା କେଉଁଠି ହେଲେ ପାଣି ଝୋପାଏ ନାହିଁ । ସେ ଜାଣେ—ଏ ସବୁ ଗୁଣିଆର କାମ । ଶେଷକୁ ସେ ସ୍ଥିର କଲା, ଗୁଣିଆ ପାଖକୁ ଯିବ । ତାକୁହିଁ କହିବ । ସେ ଗୁଣିକଲେ ପାଣି ଆସିବ ।

ସାପଟି ଯାଇ ଗୁଣିଆ ଘରେ ହାଜର । ତାକୁ ନେହୁରା ନକୁଟି ହୋଇ କହିଲା—"ଦୟାକରି ଟିକିଏ ଗୁଣି କରିଦିଅନ୍ତୁ । କାହା ଦୋଷରେ ପାଣି ନପାଇ ମୋ ପିଲାମାନେ ଛଟପଟ ହେଉଛନ୍ତି । ପାଣି ନହେଲେ ସେମାନେ ମରିଯିବେ । ଆପଣଙ୍କ ଦୟାରେ ଆମେ ବଞ୍ଚିବୁ । ଆପଣଙ୍କ ଆନନ୍ଦ ପାଇ ଝରଣା ଶୁଖିଛି । ସେ ପୁଣି ଆମର କାଳ ହୋଇଛି ।"

ଗୁଣିଆ କହିଲା—"ସମସ୍ତେ ମନଇଚ୍ଛା ତାଙ୍କର କାମ କରନ୍ତି । ପରର ସୁଖ ଦୁଃଖ ସେମାନଙ୍କର ଚିନ୍ତାର ବାହାରେ । ବରଂ ନିର୍ଦ୍ଦୋଷ ଦଣ୍ଡିତ ହେଲେ ସେମାନଙ୍କର ଆନନ୍ଦ ହୁଏ । ମଜ୍ଜା ଦେଖନ୍ତି । ସଂସାରର ଏଇ ରୀତି । ସବୁ ବିଚିତ୍ର । କାଲି ତୋ ଇଚ୍ଛା ହେଲା, ନିରୀହ ଯୁବକକୁ ଦଂଶନ କଲୁ । ତାର କିଛି ଦୋଷ ନାହିଁ । ତଥାପି ସେ ମଲା । ଏ ସବୁ କେବଳ ତୋର ଆନନ୍ଦ ପାଇଁ ଆଉ ଖୁସି ପାଇଁ ହୋଇଗଲା । ଆଜି ମୋର ଆନନ୍ଦରେ ଝରଣା ଶୁଖିଛି । ଜୀବ ଜଗତ ହଇରାଣ ହୁଅନ୍ତୁ । ତୋର ସେଥିରେ ବ୍ୟସ୍ତ ହେବାର କିଛି ନାହିଁ । ତୋ ଆନନ୍ଦରେ ମୁଁ ହସ୍ତକ୍ଷେପ କରିନାହିଁ । ତୁ ଆସି ମୋ ଆନନ୍ଦ ବେଳେ ବାଧା ସୃଷ୍ଟି କରିବା ଅନୁଚିତ ।"

ସାପ ଏଥର ଗୁଣିଆର ମତଲବ ବୁଝିଲା । କାହିଁକି ଝରଣା ଶୁଖିଛି, ସେ ବି ଠଉରାଇ ନେଲା । ସେ କହିଲା—"ରାଜପୁତ୍ର ଜୀବନ ପାଇଲେ, ଝରଣାରେ କ'ଣ ପାଣି ଆସିବ ।"

ଗୁଣିଆଟି ମୁଣ୍ଡ ହଲାଇ ହଁ ମାରିଲା । ତାପରେ ସାପଟି ଚାଲିଲା ରାଜପୁତ୍ରର ପ୍ରାଣହୀନ ଶରୀର ପାଖକୁ । ରାଜପୁତ୍ର ଦେହରୁ ସବୁ ବିଷ ଟାଣିନେଲା ।

ରାଜପୁତ୍ର ଧଡ଼ପଡ଼ ହୋଇ ଉଠିପଡ଼ିଲା । ଭାବିଲା, ସେ ବହୁ ସମୟ ଶୋଇ ଯାଇଛି । ଭାଇ ତାର ଭାରି ବ୍ୟସ୍ତ ହେଉଥିବ । ଆଉ ଡେରି କରିବା ଉଚିତ ହେବନାହିଁ । ସେ ସାଙ୍ଗେ ସାଙ୍ଗେ ସେଠୁ ଉଠି ଗୁଟିଏ ଧଳା ଘୋଡ଼ା ଉପରେ ବସିଲା । ଘୋଡ଼ାକୁ ଖୁବ୍ ଜୋରରେ ଝିପଟାଇ ଦେଲା ।

ବହୁତ ବାଟ ସେ ଗଲା । ଭାଇକୁ ଯେଉଁଠି ଅପେକ୍ଷା କରିବାକୁ କହିଥିଲା, ସେ ଜାଗ ବି ଦେଖିଲା । କେଉଁଠି ଭାଇର ସନ୍ଧାନ ମିଳିଲା ନାହିଁ । ବାଟରେ ସବୁ ଲୋକଙ୍କୁ ପଚାରିଲା । ସେମାନେ ବି କିଛି କହି ପାରିଲେ ନାହିଁ । ଯ୍ୟା ଭିତରେ ରାତି ଆସିଗଲାଣି । ସେ କ୍ଳାନ୍ତ ଅବସନ୍ନ, କ୍ଷୁଧାର୍ତ୍ତ । ପାଖରେ କଉଡ଼ିଏ ବି ନାହିଁ । ସେ ବିଶ୍ରାମ ପାଇ ପାଖ ଗାଁକୁ ଗଲା । ଗାଁ ମୁଣ୍ଡରେ ଗୋଟିଏ ବୁଢ଼ୀର ଘର । ସେଇଠି ଘୋଡ଼ାକୁ ଅଟକାଇଲା । ଦୁଆର ମୁହଁକୁ ଯାଇ ବୁଢ଼ୀକୁ କହିଲା—“ମାଉସୀ ମୁଁ କାଲିଠୁ ଖାଇନାହିଁ । ଭୋକରେ ପେଟ ଜଳୁଛି । ଘୋଡ଼ାଟି ଛଡ଼ା ମୋ ପାଖରେ କିଛି ନାହିଁ । ତୁ ମୋ ଘୋଡ଼ାକୁ ରଖ । ମୋତେ ଦିଟା ଖାଇବାକୁ ଦିଅ ।”

ଯୁବକଟିର ଅପୂର୍ବ ଚେହେରା, ଭଦ୍ର ବ୍ୟବହାର, ମିଷ୍ଟ ଭାଷା ବୁଢ଼ୀକୁ ଭାରି ଭଲ ଲାଗିଲା । ସେ କହିଲା “ପୁଅରେ ତୋତେ ଦିଟା ଖାଇବାକୁ ଦେବିବୋଲି ତୋ ଘୋଡ଼ା ରଖିବି । ଏ କ’ଣ ସମ୍ଭବ କଥା । ତା ଛଡ଼ା ତୁ ମୋ ପୁଅ ଭଳି । ଆ ଘର ଭିତରକୁ ଆ । ନ ଖାଇ ନ ପିଇ ଝାଉଁଳି ପଡ଼ିଲୁଣି । ଦି’ଟା ଖାଇଦେଇ ବିଶ୍ରାମ କର । ରାତିଟା ପାହୁ । ସକାଳୁ ଚାଲିଯିବୁ ।”

ଦିନ ଯାକ ତ ସେ କିଛି ଖାଇ ନଥିଲା । ଘୋଡ଼ା ଦଉଡ଼ାଇ ଦଉଡ଼ାଇ ସେ ହାଲିଆ । ଯେମିତି ଦି'ଟା ଖାଇ ବିଛଣା ଧରିଛି ନିଘୋଡ଼ନିଦରେ ସେ ଶୋଇଗଲା । ଉଠିଲା ବେଳକୁ ସକାଳ । ସେତେବେଳକୁ ବୁଢ଼ୀ ଉଠି ଘରର ବାସିପାଇଟି କରୁଥାଏ । ସେ ଦେଖିଲା, ବୁଢ଼ୀର ମନଟା ମରିଯାଇଛି । ସେ ଚିନ୍ତିତ ବିବ୍ରତ, ବ୍ୟସ୍ତ । କେବଳ ଯନ୍ତ୍ରଚାଳିତ ପରି ସେ କାମ କରୁଥାଏ ।

ଯୁବକଟି ବୁଢ଼ୀର ଦୟାରେ କୃତକୃତ୍ୟ । ବୁଢ଼ୀର ଏ ଅବସ୍ଥା ଦେଖି ସେ ବିଚଳିତ । କାରଣ ଜାଣିବାକୁ ସେ ବ୍ୟଗ୍ର । କିନ୍ତୁ ପଚାରିବାକୁ ସାହସ ପାଉନଥାଏ । ସେ ସକାଳୁ ଆଉ ଗଲା ନାହିଁ । ଅପେକ୍ଷା କଲା । ସୁବିଧା ଦେଖି ବୁଢ଼ୀର ମନସ୍ତାପର କାରଣ ପଚାରିଲା ।

ବୁଢ଼ୀଟି ଗୋଟିଏ ଦୀର୍ଘନିଶ୍ୱାସ ପକାଇ କହିଲା—"ପୁଅରେ, ଖାଲି ମୋର ନୁହଁ, ସବୁ ମା'ମାନଙ୍କର ଗୋଟିଏ ଚିନ୍ତା—ତାଙ୍କର ଯୁବା ପୁଅମାନଙ୍କ ପାଇଁ । ଏ ରାଜ୍ୟରେ ଗୋଟିଏ ଡାହାଣୀ ଅଛି । ତାର ଉତ୍ପାତ ବହୁତ । କେହି ତାକୁ ଜବତ କରିପାରିଲେ ନାହିଁ । ବହୁ ଲୋକଙ୍କୁ ସେ ମାରି ପକାଇଲା । ରାଜା ମଧ୍ୟ ତାକୁ ପାରିଲେ ନାହିଁ । ଲୋକେ ତାଠାରେ କାକୁତି ମିନତି କଲେ । ସେ ଶେଷକୁ ରାଜି ହେଲା । ଆଉ କଥା ଦେଲା ଯେ ପ୍ରତିଦିନ ତାର ଖାଇବାପାଇଁ ଗୋଟିଏ ଛେଳି, ଗୋଟିଏ ଯୁବକ, ଆଉ ଗୋଟିଏ ବଡ଼ ପାଉରୁଟି ଯୋଗାଇ ଦେଲେ, ସେ ଆଉ ଉତ୍ପାତ କରିବ ନାହିଁ ।

ଲୋକମାନେ ତା କଥାରେ ରାଜି ହେଲେ । ସେଇଦିନୁ ଲୋକେ ପାଳିକରି ତାର ଚାହିଦା ପୂରଣ କରୁଛନ୍ତି । କାହାର ପାଳି କେତେବେଳେ ପଡ଼ିବ, କିଏ ଜାଣେ । ସେଥିପାଇଁ ସବୁ ମା'ମାନେ ତାଙ୍କର ଯୁବକ ପୁଅମାନଙ୍କ ପାଇଁ ଚିନ୍ତିତ । ଆଜି ମୋର ପାଳି । ଛେଳିଟିଏ ଆଉ ପାଉରୁଟି ଯୋଗାଡ଼ କରି ରଖିଛି । ମୋର

ଗୋଟିଏ ବୋଲି ପୁଅ । ନୟନର ପିତୁଳା । ତାକୁ ଡାହାଣୀ ପାଖକୁ ପଠେଇଲେ, ମୁଁ ବଞ୍ଚି କ'ଣ କରିବି ? ଏଣେ ନ ପଠାଇଲେ ନ ଚଳେ । ରାଜ୍ୟସାରା ଲୋକେ ଓ ରାଜା ମୋ ବିରୁଦ୍ଧରେ ଯିବେ । ତାଙ୍କ ଗଞ୍ଜଣା ଡାହାଣୀ ଖାଇବାଠାରୁ ବଳିଯିବ ।''

ରାଜାପୁଅ ପଚାରିଲା 'ଡାହାଣୀକୁ କ'ଣ କେହି ମାରି ପାରୁନାହାନ୍ତି ?

ବୁଢ଼ୀ କହିଲା—''ସେ କଥା ତୁଣ୍ଡରେ ଧରନା ନାରେ ବାପା । କାନ୍ଥର ବି କାନ ଅଛି । ଡାହାଣୀ ଶୁଣିଲେ ରାଗିବ । କ'ଣ ବୋଲି କ'ଣ କରି ବ । ବାବୁରେ, କେତେ ବୀର ଆସିଛନ୍ତି, ପ୍ରତିଜ୍ଞା କରିଛନ୍ତି—ଡାହାଣୀକୁ ନ ମାରିଲେ ଫେରିବୁ ନାହିଁ । କିନ୍ତୁ ସେମାନେ ପ୍ରକୃତରେ ଆଉ ଫେରିନାହାନ୍ତି । ଡାହାଣୀ କିନ୍ତୁ ବଞ୍ଚିଛି ।''

ବୁଢ଼ୀ ବାଷ୍ପରୁଦ୍ଧ କଣ୍ଠରେ କହିଲା—''ରାଜାଙ୍କର ଉଦ୍ୟମ ମଧ୍ୟ କମ୍ ନୁହେଁ । ସେ ଘୋଷଣା କରିଛନ୍ତି, ଯେ ଡାହାଣୀକୁ ମାରିଦେବ, ତାକୁ ରାଜ୍ୟରୁ ଅଧେ ଦେବେ ଆଉ ରାଜଜେମାଙ୍କୁ ବାହା କରିଦେବେ । ସେ ଘୋଷଣା ବି ବୃଥା । କେହି ତ ଏ ପର୍ଯ୍ୟନ୍ତ ଡାହାଣୀକୁ ମାରି ପାରିଲେ ନାହିଁ । ସେଥିପାଇଁ ଜେମା ଅଭିବାଢ଼ୀ ହୋଇ ରହିଛନ୍ତି ।'' ବୁଢ଼ୀର ଆଖିରେ ଲୁହ । ଗୁପ୍ତ ପଟାଇ କେବଳ ଏକ ଦୀର୍ଘ ନିଶ୍ୱାସ ତାର ବାହାରି ଆସିଲା ।

ଯୁବକଟି ବୁଢ଼ୀକୁ ସାନ୍ତ୍ୱନା ଦେଇ କହିଲା—'ତୁ କାନ୍ଦ ନାହିଁ । ଗୋଟିଏ କଥା କର । ତୋ ପୁଅ ବଦଳି ଆଜି ମୋତେ ତୁ ପଠାଇଦେ । ମୁଁ ଡାହାଣୀକୁ ମାରିଦେବି ।''

ବୁଢ଼ୀ କହିଲା—''ତୁ ପରପୁଅ । ତୋତେ ପଠାଇ ତୋ ମାକୁ

ପୁତ୍ରହୀନା କରି କି ଯଶ ମୁଁ ପାଇବି ? ମୋର ତ ପାଳି । ମୋ ପୁଅ ଯିବ । ସେ ତ ନସୀବର କଥା ; ତା ଛଡ଼ା ତୁ ତ ଏ ଦେଶର ପୁଅ ନୁହଁ । ତୁ କାହିଁକି ଏ ବିପଦ ମୁଣ୍ଡାଇବୁ । ମୁଁ ବା କାହିଁକି ପର ପୁଅକୁ ପଠାଇ ଦୋଷରେ ଭାଗୀ ହେବି ।”

ବୁଢ଼ୀର ମାନବିକତା ଅସୀମ । ନୈତିକତା ମହାନ । ରାଜପୁତ୍ର ଏହା ଦେଖି ବିସ୍ମିତ, ଅଭିଭୂତ । ତେଣୁ ସେ ବୁଢ଼ୀକୁ ବହୁତ ବୁଝାଇଲା । ବାଧ୍ୟ କଲା । ଶେଷକୁ କହିଲା “ମାଉସୀ, ମୋର ସାବତ ମା । ଘରୁ ମୋତେ ତଡ଼ିଦେଲା । ସାଥିରେ ଭାଇ ଥିଲା । ସେ ବା କୁଆଡ଼େ ଗଲା, ଜଣାନାହିଁ । ମୁଁ ଏକାନ୍ତ ଏକୁଟିଆ । ମୋର ଜୀବନ ଦୁର୍ବିସହ । ଆଉ ଏମିତି ରହିବାକୁ ଭଲ ଲାଗୁନାହିଁ । ମୁଁ ରାଜାପିଲା । ଯୁଦ୍ଧ କୌଶଳରେ ପାରଙ୍ଗମ । ଡାହାଣୀ ଏତେ ହଇରାଣ କରୁଛି । ମୁଁ ଯଦି ଲୋକଙ୍କୁ ସାହାଯ୍ୟ କରିପାରିଲି ନାହିଁ, ମୋର ଧର୍ଯ୍ୟର ମାଧୁର୍ଯ୍ୟ ରହିଲା କେଉଁଠି ? ତୁ ମତେ ଅନୁମତି ଦେ । ଦେଖିବୁ, ମୁଁ ଡାହାଣୀକୁ ମାରିଦେବି ।”

ବୁଢ଼ୀ ମନେ ମନେ ବିଚାର କଲା । ରାଜାପୁଅ ଯାହା କହୁଛି, ସତ୍ୟ ହୋଇଥିଲେ, ସେ ଚେଷ୍ଟା କରୁ । ପିଲାଟି ସାହାସୀ ବୋଲି ଜଣାଯାଉଛି । ସାହାସୀକୁ ଉତ୍ସାହ ଦେବାର କଥା । ସବୁ ଜାଣିଶୁଣି ଯଦି ବାହାରୁଛି, ତେବେ ଯାଉ । ଭଗବାନ ତାର ମଙ୍ଗଳ କରନ୍ତୁ । ଡାହାଣୀକୁ ଯଦି ମାରିଦିଏ, କାଳ କାଳକୁ ଯଶ ରହିବ । ଏ ସବୁ ଭାବି ବୁଢ଼ୀ ରାଜିହେଲା । ଖାଇପିଇ ରାଜାପୁଅ ବିଶ୍ରାମ ନେଲା ।

ବେଳ ଟିକିଏ ଥାଏ । ବୁଢ଼ୀ ରାଜାପୁଅ ଛେଳି ଆଉ ପାଉଁରୁଟି ଦେଲା । ଡାହାଣୀ ରହୁଥିବା ଗଛ ଆଡ଼େ ରାଜାପୁଅ ଗଲାବେଳେ ବୁଢ଼ୀଟି ବାଟେଇ ଦେଇ ଆସିଲା ।

ରାଜାପୁଅ ଡାହାଣୀ ରହୁଥିବା ଗଛ ମୂଳରେ ଛେଳକୁ ବାନ୍ଧି ଦେଲା । ପାଉଁରୁଟିକୁ ରଖିଦେଲା, ଛେଳଠାରୁ ଟିକିଏ ଦୂରରେ । ପାଖରେ ଆଉ ଗୋଟିଏ ଗଛ । ତାର ମୂଳରେ ଆସି ବସିଲା । କିନ୍ତୁ ଡାହାଣୀ ରହୁଥିବା ଗଛକୁ ଏକା ଆଖିରେ ଅନାଇଥାଏ ।

ରାତିର ପ୍ରଥମ ପ୍ରହର । ଯେଉଁଠି ଛୋଟା ଜହ୍ନ ଆଲୁଅ ଗଛଆଡ଼େ ବଙ୍କୁଡ଼ି ହୋଇ ପଡ଼ୁଥାଏ । ଡାହାଣୀଟି ଗଛରୁ ଓହ୍ଲାଇଲା । ସେ ଏକ ବିରାଟ ଭୟଙ୍କର ଜୀବ । ପ୍ରଥମେ ସେ ଚାରିଆଡ଼କୁ ଚାହିଁଲା । କି ବିକଟାଳ ତାର ମୁହଁ । ସାଧାରଣ ଲୋକ ଦେଖିଲେ; ଭେଟଣା ହୋଇଯିବ । ପ୍ରଥମେ ସେ ପାଉଁରୁଟିରୁ ଏକା ଥରକେ ଗିଳିଦେଲା । ତାପରେ ଛେଳକୁ ଧରି ନେଲା । ତାକୁ କାମୁଡ଼ି ଖଣ୍ଡ ଖଣ୍ଡ କରି ଖାଇବାକୁ ଲାଗିଲା । ଏଣେ ଯୁବକ ଉପରେ ତାର ନଜର । ଛେଳର ରକ୍ତ ଧାରି ଧାରି ହୋଇ ବୋହି ଯାଉଥାଏ । ତାର ଆର୍ତ୍ତନାଦ କାନ ଅତଡ଼ା ପକାଉଥାଏ । ତାହା ଅତ୍ୟନ୍ତ ମର୍ମନ୍ତୁଦ । ସେ ଦୃଶ୍ୟ ବିଭତ୍ସ, ବେଦନା ଦାୟକ ଅଥଚ ଡାହାଣୀର ଆନନ୍ଦ ବାଖ୍ୟାତୀତ । ତାର ମୁଖ ମଣ୍ଡଳରୁ ତାହା ସ୍ପଷ୍ଟ ।

ରାଜପୁତ୍ର ଆଉ ଡେରି କଲା ନାହିଁ । ଖଣ୍ଡା ବାହାର କରି ଡାହାଣୀ ଆଡ଼କୁ ମାଡ଼ିଗଲା । ରାଜପୁତ୍ରର ଧାଇଁବା ଦେଖି ଡାହାଣୀଟି ଛେଳର ଅବଶିଷ୍ଟାଂଶ ଚାକୁ ଚାକୁ କରି ଗିଳିଦେଲା । ପେଟକୁ ତାର ଯାଇପାରିଲା ନାହିଁ । ତଣ୍ଟିରେ ଅଟକି ଗଲା । ତଥାପି ଯୁଦ୍ଧପାଇଁ ଧାଇଁ ଆସିଲା । ଭୟଙ୍କର ଯୁଦ୍ଧ ଚାଲିଲା । ଯୁଦ୍ଧ ସମୟରେ ବେଳେ ବେଳେ ଡାହାଣୀ ଅଟକି ଯାଏ । ଖୁଁ ଖୁଁ ହୋଇ କାଶେ । ମୁହଁରୁ ତାର ଅସ୍ୱସ୍ତି କଥା ବେଶ୍ ଜଣା ପଡୁଥାଏ । ଯୁଦ୍ଧରେ ସେ ମନ ପ୍ରାଣ ଦେଇ ପାରୁନଥାଏ । ତାର

ଅଟକି ଯିବାର ସୁବିଧା ନେଇ ରାଜାପୁଅ ତାର ମୁଣ୍ଡ ଗଣ୍ଡିରୁ ଅଲଗା କରିଦେଲା ।

ବହୁ ସମୟ ଯୁଦ୍ଧ କରି କରି ରାଜପୁତ୍ର କ୍ଳାନ୍ତ ଅବସନ୍ନ । କେବଳ ସେତିକି ନୁହେଁ, ଡାହାଣୀର ଆଘାତରେ ତାର ଦେହ ମଧ୍ୟ ଭୟଙ୍କର ଭାବରେ କ୍ଷତ ବିକ୍ଷତ ଯୁଦ୍ଧ ଯେମିତି ସରିଗଲା, ସେ ସେଇଠି ପଡ଼ିଗଲେ । ତାପରେ ସେ ଅଚେତ ।

ପରଦିନ ସକାଳ । ସବୁଦିନ ପରି ମେହେନ୍ତର ବି ଆସିଲା ସେ ଜାଗା ଓଳେଇ ସଫା କରିବାକୁ । ଏହା ହେଉଛି ତାର ନିତିଦିନିଆ କାମ । ସବୁଦିନ ଦେଖେ ମଲା ଯୁବକର କିଛି ଅଂଶ । ଆଜି କିନ୍ତୁ ଓଲଟା । ଡାହାଣୀର ମୁଣ୍ଡ ଗଣ୍ଡି ଅଲଗା । ଅଳ୍ପ ଦୂରରେ ଏକ ସୁନ୍ଦର ଯୁବକ ଜ୍ଞାନହୀନ ହୋଇପଡ଼ିଛି । ସେ ତାକୁ ଉଠେଇବାକୁ ଯେତେ ଚେଷ୍ଟା କଲା, ପାରିଲା ନାହିଁ । ସବୁ ଉଦ୍ୟମ ତାର ବିଫଳ ହେଲା । ଏତିକିବେଳେ ମୁଣ୍ଡରେ ତାର ଏକ ଦୁର୍ବୁଦ୍ଧି ଜୁଟିଲା । ଭାବିଲା—ଡାହାଣୀକୁ ଏ ଯୁବକ ମାରିଥିବା କଥା କେହି ଜାଣି ନାହାନ୍ତି । ଯଦି ଏଇ ଯୁବକକୁ ସେ ଖତମ କରିଦିଏ, ଲୋକେ ଭାବିବେ ଯେ, ସେ ଡାହାଣୀକୁ ମାରିଛି । ତାକୁ ରାଜ୍ୟରୁ ଅଧେ ଆଉ ରାଜାଝିଅ ମିଳିଯିବ । ପ୍ରଥମେ ସେ ରାଜପୁତ୍ରର ଖଣ୍ଡା ନେଇ ତାକୁ ହତ୍ୟା କରିବ ବୋଲି ବିଚାରିଲା । ସେ ତ ଜୀବନରେ କେବେ ଖଣ୍ଡା ଧରି ନାହିଁ । ଗୋଟେ କୀଟଟିଏ ବି ମାରିନାହିଁ । ତେଣୁ ରାଜ-ପୁତ୍ରକୁ ହତ୍ୟା କରିବାକୁ ତାର ସାହସ କୁଲେଇଲା ନାହିଁ । ବରଂ ତାର ହାତ ଥରିଲା ।

ଅନତି ଦୂରରେ କୁମ୍ଭାର ଗାତ । କୁମ୍ଭାରମାନେ ସେଉଠୁ ମାଟି ନେଇ ହାଣ୍ଡି, ମାଠିଆ ଗଢ଼ନ୍ତି । ମେହେନ୍ତରଟି ରାଜପୁତ୍ରକୁ ଟେକି ନେଇ ସେଇ ଗାତ ଭିତରେ ଶୁଆଇ ଦେଲା । ତା ଉପରେ କିଛି

ମାଟି ଜମା କଲା । ଜୀବନଯାକ ସେ ଭୀରୁ । କାପୁରୁଷ । ଦୁଃସାହସିକ କାର୍ଯ୍ୟ ତା ପକ୍ଷେ ସ୍ୱପ୍ନ । ଆଜି ଭାବୁଛି, ମାଟି ଚଢ଼ାଇ ଯୁବକକୁ ଲୁଚାଇଦେବ । ଏହା ଜୀବନରେ ପ୍ରଥମ । ଭୟରେ ଦେହ ତାର ଗୋଟା ସୁଦ୍ଧା ଥରୁଥାଏ । ତେଣୁ ଯୁବକକୁ ସେ ସମ୍ପୂର୍ଣ୍ଣ ଭାବରେ ମାଟିରେ ପୋତି ପାରିଲା ନାହିଁ । କେମିତି ପୋତିଲା, ତା ବି ସେ ଦେଖିପାରିଲା ନାହିଁ । କିନ୍ତୁ ଡାହାଣୀର ମୁଣ୍ଡଟି ଧରି ରାଜଦରବାରରେ ହାଜର ।

ଡାହାଣୀ ମରି ହୋଇଥିବା କଥା ଯେତେବେଳକୁ ଚାରିଆଡ଼େ ରାଷ୍ଟ୍ର ହୋଇଗଲାଣି । ଜଙ୍ଗଲର ନଆଁ ପରି । ରାଜଦରବାର ଲୋକରେ ଭର୍ତ୍ତି । ମେହେନ୍ଦ୍ରକୁ ଦେଖିବାକୁ ସମସ୍ତେ ବ୍ୟାକୁଳ । ମେହେନ୍ଦ୍ରର ଜୟ ଜୟକାର ଧ୍ୱନିରେ କାନ ଅତଡ଼ା ପଡ଼ୁଥାଏ । ମେହେନ୍ଦ୍ର ଲୋକ ଗହଳି ଆଡ଼େଇ ଆଡ଼େଇ ରାଜାଙ୍କ ପାଖରେ ପହଞ୍ଚିଲା । ସମ୍ମାନ ସହକାରେ କହିଲା—"ମହାରାଜ ! ମୁଁ ରାକ୍ଷସୀକୁ ମାରି ମୁଣ୍ଡ ଧରି ଆସିଛି । ତୁମ୍ଭ ଏଥର ପ୍ରତିଜ୍ଞା ରଖନ୍ତୁ—ମୋତେ ରାଜ୍ୟରୁ ଅଧେ ଏବଂ ଜେମାଙ୍କୁ ଦିଅନ୍ତୁ ।"

ରାଜା ମେହେନ୍ଦ୍ରକୁ ଜାଣନ୍ତି । ସେ ଯେ ଭୀରୁ ଆଉ କାପୁରୁଷ ଏଥିରେ ତାଙ୍କର ସନ୍ଦେହ ନାହିଁ । ସେ ଡାହାଣୀକୁ ହତ୍ୟା କରିଥିବା ଅସତ୍ୟ, ଏଥିରେ ସେ ନିଶ୍ଚିତ । ଡାହାଣୀ ମରିଛି ଆଉ ତାର ମୁଣ୍ଡ ଧରି ସେ ଆସିଛି, ଏଥିରେ ଦ୍ୱିମତ ନାହିଁ । ଲୋକମାନେ ବର୍ତ୍ତମାନ ମେହେନ୍ଦ୍ରର ସପକ୍ଷରେ । ଲୋକେ କିଛି ବୁଝନ୍ତି ନାହିଁ । ହାଓ୍ୱାରେ ଭାସି ଯାଆନ୍ତି । ଗୁଜବରେ ଆସ୍ଥା ରଖି ମାତନ୍ତି । ଏହା ତାଙ୍କର ବ୍ୟକ୍ତିଗତ ଜୀବନର ଅଭିଜ୍ଞତା । ତାଙ୍କୁ ଏଡ଼ାଇ ହେବ ନାହିଁ । ଲୋକମତକୁ ଉପେକ୍ଷା କଲେ, ଲୋକେ ମାତିବେ । ନୀଚ ଲୋକ ଥରେ ମୁହଁ ପାଇଲେ, ଅବସ୍ଥା ଅସମ୍ଭାଳ

ହେବ । ସେମାନେ କିଛି ନିୟମ, ଆଇନ କାନୁନ ମାନି, ଅମାନି ବିଚାର କରନ୍ତି ନାହିଁ । ରାଜା କିଛି ସମୟ ଚିନ୍ତା କଲା ପରେ ମେହେନ୍ଦରକୁ ଅଧେ ରାଜ୍ୟ ଦେବା ପାଇଁ ଆଦେଶ ଦେଲେ । ପ୍ରକୃତ କଥା ନ ଜାଣି ଝିଅ ବିବାହ ଦେବା ଅନୁଚିତ । ସେଥିପାଇଁ ଗୋଟିଏ ବାହାନାରେ ଏକ ବର୍ଷ ସମୟ ସେ ନେଇଗଲେ । ମେହେନ୍ଦର ଅଧେ ରାଜ୍ୟ ପାଇ ଭାରି ଖୁସି । ଜୀବନଯାକ ମଇଳା ସଫା କରି ପେଟ ପୂରୁ ନଥିଲା । ଏଥର ସେ ଅଧେ ରାଜ୍ୟର ମାଲିକ । ସେ ନିଜକୁ ଭାଗ୍ୟବାନ ମନେ କଲା । ଖୁସି ହୋଇ ସେ ଘରକୁ ଚାଲିଗଲା ।

ସବୁଦିନ ପରି ସେଦିନ ବି ସେଠାକୁ କୁମ୍ଭାରମାନେ ମାଟି ଖୋଳିବାକୁ ଆସିଲେ । ଦେଖିଲେ—ଗାତରେ ଗୋଟିଏ ସୁନ୍ଦର ଯୁବକ । ଶରୀର ତାର କ୍ଷତବିକ୍ଷତ । ତା ଉପରେ ମାଟି ଜମା ହୋଇଛି । ସେ ବଞ୍ଚିଛି । ନିଶ୍ୱାସ ପ୍ରଶ୍ୱାସର ଗତି ଅତି କ୍ଷୀଣ । ମାଟି ବାହାର କରି ତାକୁ ପଦାକୁ ଆଣିଲେ । ତାକୁ ପରିଷ୍କାର କରି ସେବା ଶୁଶ୍ରୂଷା କରିବାରୁ ତାର ଚେତା ଆସିଲା । ସେମାନେ ତାକୁ ଘରକୁ ନେଇ ଆସିଲେ । କିନ୍ତୁ ସେ ତାର ସ୍ୱାଭାବିକ ଅବସ୍ଥାକୁ ଫେରିଲା ନାହିଁ । ସେ ପ୍ରାୟ ମୂକ । କଦବା କେମିତି ସେ ପଦେ ଅଧେ କହେ । ଅକ୍ଲାନ୍ତ ଚେଷ୍ଟା ଫଳରେ ସଂପୂର୍ଣ୍ଣ ସୁସ୍ଥ ହୋଇଗଲା । ତାପରେ ସେ କେମିତି ଏ ରାଜ୍ୟକୁ ଆସିଲା, ବୁଢ଼ୀ ପାଖରେ ରହିଲା, ବୁଢ଼ୀର ପାଳିଦିନ ଡାହାଣୀ ପାଖକୁ ଗଲା, ତାକୁ ମାରି କପରି ସେ ଜ୍ଞାନଶୂନ୍ୟ ହୋଇଗଲା, ସବୁ କଥା ଗୋଟି ଗୋଟି କରି କହିଲା ।

ଡାହାଣୀକୁ ମେହେନ୍ଦର ମାରିବା କଥା ଚାରିଆଡ଼େ ରାଷ୍ଟ୍ର ହୋଇଥାଏ । ସେ କଥା କୁମ୍ଭାରମାନେ ବି ଜାଣନ୍ତି । କେତେକ

ଲୋକଙ୍କ ମନ କନ୍ତୁ ମାନୁ ନଥାଏ । ସେମାନେ ମେହେନ୍ତରର କଥାକୁ ବିଶ୍ୱାସ କରୁ ନ ଥାଆନ୍ତି । ସେମାନଙ୍କ ଯୁକ୍ତି—ମେହେନ୍ତର ତ ସବୁଦିନ ସେ ଜାଗା ଓଳେଇବାକୁ ଯାଏ । ଡାହାଣୀକୁ ସବୁଦିନ ଦେଖିଥିବ । କେବେ ମାରୁ ନ ଥିଲା । ହଠାତ୍ ତାକୁ ମାରିବା ଅସମ୍ଭବ । ତା ଛଡ଼ା ସେ ସାହସୀ ନୁହଁ । ଯୁଦ୍ଧ ବିଦ୍ୟା ତାକୁ ଜଣା ନାହିଁ । ତା ଘରେ ଖଣ୍ଡାଟିଏ ବି ନାହିଁ । ହଠାତ୍ ସେ ବୀର ହୋଇଗଲା । ପୁଣି ଯେଉଁ ଡାହାଣୀ ହାତରେ କେତେ ପ୍ରଖ୍ୟାତ ସାହସୀ ବୀର ପ୍ରାଣ ଦେଇଛନ୍ତି, ତାକୁ ପୁଣି ସେ ମାରିଦେଲା ! ସବୁ ଅସମ୍ଭବ ! ସବୁ କଳ୍ପନା ପ୍ରସୂତ ।

ସେମାନଙ୍କର ଯୁକ୍ତି ଅକାଟ୍ୟ । ଏ କଥା କୁମ୍ଭାରମାନେ ବି ଶୁଣିଛନ୍ତି । ରାଜପୁତ୍ର କଥା ଶୁଣି ସନ୍ଦେହ ତାଙ୍କର ଆହୁରି ବଢ଼ିଗଲା । ସେମାନେ ବୁଢ଼ୀ ପାଖକୁ ଗଲେ । ରାଜପୁତ୍ର ବଞ୍ଚିଥିବା କଥା ଶୁଣି ବୁଢ଼ୀ ଏତେ ଖୁସି ହୋଇଗଲା ଯେ ସେ କାନ୍ଦି ପକାଇଲା । ତା ଘୋଡ଼ାଟି କୁମ୍ଭାରମାନଙ୍କ ହାତରେ ଟେକିଦେଇ ଦେଲା । ନିଜେ ରାଜପୁତ୍ରକୁ ଦେଖିବାକୁ ବି ଧାଇଁଗଲା । ମାଝରେ ପହଞ୍ଚି ଆଶିର୍ବାଦ ଅଜାଡ଼ି ଦେଲା । ତା ପରେ ଯେତେବେଳେ ସେ ରାଜପୁତ୍ର ପାଖକୁ ଆସେ । ଏ ଘଟଣା ପରେ କୁମ୍ଭାରମାନଙ୍କର ରାଜପୁତ୍ରକୁ ଅବିଶ୍ୱାସ କରିବାର କିଛି ନ ଥିଲା ।

ଗୁଜବ ବାଇଦ ସହସ୍ର କୋଶ । ଦିନ ଘଣ୍ଟାରେ ବ୍ୟାପିଯାଏ । ରାଜପୁତ୍ର ଡାହାଣୀକୁ ମାରିଥିବା କଥା ଲୋକେ ବିଶ୍ୱାସ କଲେ । ସେଥିପାଇଁ, କୁମ୍ଭାର ଘରେ ଭିଡ଼ । ସେମାନେ ଆସି ରାଜପୁତ୍ରଙ୍କୁ ସମ୍ମାନ ଦେଲେଣି । ସକାଳୁ ସଞ୍ଜ ପର୍ଯ୍ୟନ୍ତ ଲୋକେ ପିମ୍ପୁଡ଼ି ଧାର ପରି ଲମ୍ବିଥାନ୍ତି । ମେହେନ୍ତରର ନିନ୍ଦୁକଙ୍କ ସଂଖ୍ୟା ବୃଦ୍ଧି ପାଇଲାଣି । ଲୋକେ ବାଣ୍ଡରେ ଘାଟରେ ମେହେନ୍ତରକୁ

ବିଶ୍ୱାସଘାତକ ବୋଲି କହିଲେଣି । ଏ କଥା ମେହେନ୍ଦ୍ରର କାନରେ ପଡ଼ିଲା । ସେ ଡରିଗଲା । ରାଜା ଜାଣିଲେ ତାର ଯେ ଶୂଳିହେବ, ଏଥିରେ ତାର ସନ୍ଦେହ ନାହିଁ । କଥାଟାକୁ ଲୁଚି ଦେବାକୁ ହେବ । ସେଥିପାଇଁ ସେ ଚିନ୍ତିତ ।

ସେ ତ ବର୍ତ୍ତମାନ ଅଧେ ରାଜ୍ୟର ମାଲିକ । କୁମ୍ଭାରମାନେ ତା ଇଲାକାରେ ଅଛନ୍ତି । ସେମାନଙ୍କୁ ରାଜ୍ୟରୁ ବିଦା କରିଦେଲେ, ସେମାନଙ୍କ ସାଥିରେ ରାଜଦ୍ରୋହ ଚାଲିଯିବ । ଲୋକମାନେ ଭୀରୁ, ସ୍ୱାର୍ଥପର । ବାହାଦୁରଙ୍କ ଆଦେଶ କାର୍ଯ୍ୟକାରୀ ହେଲେ, ଲୋକେ ଡରିଯିବେ । ସମାଲୋଚନା କରିବାକୁ ସାହସ କରିବେ ନାହିଁ ।

କୁମ୍ଭାରମାନେ ଅତି ନିରୀହ । ସରଳ । ସଂସାରର ଜଟିଳତା ତାଙ୍କୁ ସ୍ପର୍ଶ କରିନାହିଁ । ସେମାନେ ସକାଳୁ ଉଠି ମାଟି କାଟନ୍ତି । ତାକୁ ଘରକୁ ଆଣି ହାଣ୍ଡି ଗଢ଼ି ପୋଡ଼ନ୍ତି । ହାଣ୍ଡି ବିକିବା ପାଇଁ ଯାହା ସେମାନେ ବଜାରକୁ ଯିବାର କଥା । ବାହାର ଦୁନିଆ ବିଷୟରେ ସେମାନେ ସମ୍ପୂର୍ଣ୍ଣ ଅଜ୍ଞ । ତେଣୁ ବିଦେଶ ଯିବାକୁ ତାଙ୍କର ଭାରି ଭୟ । ଦେହ ଥରେ । ରାଜ୍ୟ ଛାଡ଼ି ଚାଲିଯିବାର ଆଦେଶ, ତାଙ୍କ ପାଇଁ ମର୍ମନ୍ତୁଦ । ଯଦି ନ ଯାଆନ୍ତି, ଶୂଳି ପାଇବେ । ଏ କଥା ଶୁଣି ସେମାନଙ୍କର ହୃଦକ ଶୁଖିଗଲା । ସେମାନେ ନିର୍ବେଦ । ସ୍ଥାଣୁ ଭଳି ବସି ରହିଲେ । କ'ଣ କରିବାକୁ ହେବ ଜାଣିପାରିଲେ ନାହିଁ ।

ରାଜାପୁଅ ସାହସୀ, ବୁଦ୍ଧିମାନ, ପ୍ରତ୍ୟୁତ୍ପନ୍ନମତି । ବାହାଦୁରଙ୍କ ଆଦେଶର ତାତ୍ପର୍ଯ୍ୟ ସେ ବୁଝିପାରିଲା । କୁମ୍ଭାରମାନଙ୍କୁ ବୁଝାଇଲା । ଅଭୟ ଦେଲା । ମଣିଷ ବୁଡ଼ି ମଲାବେଳେ କୁଟାଖିଅଟିଏ ପାଉଲେବି ସାହସ ଆସେ । ରାଜାପୁଅ ସାନ୍ତ୍ୱନା ତାଙ୍କର ବଳ ଓ ସାହସ

ବଢ଼େଇ ଦେଲା । ଏବେ ସେମାନେ ତା'ର ଉପରେ ନିର୍ଭରଶୀଳ । ରାଜାପୁଅ କଥାରେ ସେମାନେ ରହିବାପାଇଁ ମେହେନ୍ଦରଙ୍କୁ ତୋଷାମଦ କଲେନାହିଁ । ବରଂ ବେପରୁଆ ଭାବରେ ରାଜ୍ୟ ଛାଡ଼ି ଚାଲିଗଲେ ।

ବହୁ ଅଞ୍ଚଳ ବୁଲି ବୁଲି ସେମାନେ ଗୋଟିଏ ପାହାଡ଼ ଉପରେ ପହଞ୍ଚିଲେ । ଜାଗାଟି ସମତଳ ଓ ପ୍ରଶସ୍ତ । ଦୃଶ୍ୟ ତାର ଅତି ମନୋହର, ମନମୁଗ୍ଧକର, ଚିତ୍ତାକର୍ଷକ । ପାଖରେ ଚିରସ୍ରୋତା ଝରଣା । କଲକଲ ହୋଇ ବୋହିଯାଉଛି ।

ରାଜପୁତ୍ର କୁମ୍ଭାରମାନଙ୍କ ବସତି ପାଇଁ ଏ ଜାଗାଟି ନିରୂପଣ କଲା । ସେମାନେ ଜଙ୍ଗଲ କାଟି ବସତି ସ୍ଥାପନ କଲେ । ସେଠି ମାଟି ପ୍ରଚୁର । ଘନ ଜଙ୍ଗଲ । ଜାଳର ମଧ୍ୟ ଅଭାବ ନାହିଁ । ସହର ଠାରୁ ବେଶୀ ଦୂର ନୁହେଁ । ସେମାନଙ୍କ ହାଣ୍ଡି ବ୍ୟବସାୟ ସେଠି ବେଶ୍ ଚାଲିଲା । ପାଖ ସହରରେ ବିକି ସେମାନେ ବି ପଇସା ବି ରୋଜଗାର କଲେ । ରାଜପୁତ୍ର କଥାମାନ ସୁଖରେ ଥିବାରୁ ସେମାନେ ରାଜପୁତ୍ରକୁ ମୁଣ୍ଡରେ ମୁଣ୍ଡାଇଥାନ୍ତି । ତା କଥା ତଳେ ପକାନ୍ତି ନାହିଁ । ତାକୁ କୌଣସି କାମ ବି କରାଇ ଦିଅନ୍ତି ନାହିଁ । ତେଣୁ ରାଜପୁତ୍ର ହାତରେ ସମୟ ବହୁତ । ସେ ଗୋଟିଏ ସୁନ୍ଦର ବଗିଚା କଲା । ବିଭିନ୍ନ ଜାଗାରୁ ବିଭିନ୍ନ ଫୁଲ ଫଳ ଗଛ ସେଠି ଆଣି ଲଗାଇଲା । ସେଇ ବଗିଚାର ଖ୍ୟାତି ଚାରିଆଡ଼େ ପ୍ରଘଟ ହୋଇଗଲା । ଦୂର ଦୂରାନ୍ତରୁ ଲୋକେ ସେ ବଗିଚା ଦେଖିବାକୁ ଆସିଲେ । ଛୁଟି ଦିନ ସେଠି ପ୍ରବଳ ଭିଡ଼ । ପାଖ ସହରରୁ ବହୁଲୋକ ସେ ବଗିଚାରେ ମଉଜ ମଜଲିସ କରିବାକୁ ଆସନ୍ତି ।

ସେଇ ଦେଶର ମନ୍ତ୍ରୀ ଝିଅ ଭାରି ଫୁଲ ସଉକୀ । ଏ ବଗିଚା ଖବର ତା କାନରେ ପଡ଼ିଲା । ବଗିଚାକୁ ଦେଖିବାକୁ ସେ ନିଜେ

କଲି । ବଗିଚାର ସାଜସଜ୍ଜାରେ ମୁଗ୍ଧ । ପ୍ରତି ସନ୍ଧ୍ୟାରେ ସେ ଥରେ ଆସି ବଗିଚାରେ ବୁଲିଯାଏ ।

ମନ୍ତ୍ରୀଙ୍କ ଝିଅ ଭାବେ—କୁମ୍ଭାରମାନେ ବୁଦ୍ଧିହୀନ । ଏ ପ୍ରକାର ସୁନ୍ଦର ବଗିଚାର କଳ୍ପନା, ତାଙ୍କ ପକ୍ଷେ ଅସମ୍ଭବ ।

ଏହି ବଗିଚାର ପରିକଳ୍ପନା ପଛରେ ଯାହାର ହାତ ଅଛି ତାକୁ ଜାଣିବାକୁ ତାର ଭାରି ଆଗ୍ରହ ।

ବହୁ କଷ୍ଟରେ ବଗିଚାର ସ୍ରଷ୍ଟାକୁ ସେ ଠାବ କଲା । ତାଙ୍କୁ ପାଖକୁ ଡାକି ଦେଖିଲା—ସେ ଅତ୍ୟନ୍ତ ସୁନ୍ଦର, ଭଦ୍ର, ସମ୍ମାନପ୍ରଦ, ଅନ୍ତର୍ମୁଖୀ । ପ୍ରଥମ ସାକ୍ଷାତରେ ମନ୍ତ୍ରୀ କନ୍ୟା ତନ୍ମୟୀ । ପ୍ରେମାବଦ୍ଧ । ସେଦିନ ସେ ଘରକୁ ଫେରିଲା ସତ, କିନ୍ତୁ ମନ ତାର ବଗିଚାରେ ରହିଗଲା । ସେତିକି ବେଳୁ ସେ ଅନ୍ୟମନସ୍କ । କିଛି ଖାଏନାହିଁ । ଝିଅର ଏପରି ଭାବ ଦେଖି ମନ୍ତ୍ରୀ ବହୁତ ବ୍ୟସ୍ତ । କାରଣ ଜାଣିବାକୁ ଚାହିଁଲେ ।

ଝିଅ କହିଲା--ସେ ବଗିଚାର ସ୍ରଷ୍ଟାକୁ ବିବାହ କରିବାକୁ ପ୍ରତିଜ୍ଞାବଦ୍ଧ । ବିବାହ ନକଲେ ସେ ଆତ୍ମହତ୍ୟା କରିବ ।

ସମାଜରେ ମନ୍ତ୍ରୀଙ୍କ ସ୍ଥାନ ଖୁବ୍ ଉଚ୍ଚରେ । କନ୍ୟା ତାଙ୍କର କୁମ୍ଭାରକୁ ବିବାହ କରିବ, ସେ କଳ୍ପନା କରିପାରିଲେ ନାହିଁ । ତେଣୁ ସେ ଝିଅକୁ ସେଠି ବାହା ନ ଦେବାକୁ ପ୍ରବର୍ତ୍ତାଇଲେ । ସେ ପରିଷ୍କାର କହିଦେଲା ଯେ ତା କଥା ନ ରହିଲେ ସେ ଆତ୍ମହତ୍ୟା କରିବ । ମନ୍ତ୍ରୀ ଜାଣନ୍ତି, ଝିଅ ତାଙ୍କର ଜିଦ୍‌ଖୋର । ତେଣୁ ସେ ତା କଥାରେ ରାଜି ନ ହେଲେ ରକ୍ଷା ନାହିଁ । ତେଣୁ ସେ ରାଜି ହେଲେ । କିନ୍ତୁ ଗୋଟିଏ ସର୍ତ୍ତରେ । ବିବାହ ପୂର୍ବରୁ ସେମାନେ ଜଳଯାତ୍ରା କରିବେ । ଯାତ୍ରା ଶେଷରେ ଝିଅ ପସନ୍ଦ ହେଲେ, ସେ ବିବାହ ଦେବେ ।

ଝିଅଟିର ଆପତ୍ତି ନଥିଲା । ଜଳଯାତ୍ରା ପାଇଁ ନିର୍ଦ୍ଦିଷ୍ଟ ଦିନ ସ୍ଥିର ହେଲା । ରାଜପୁତ୍ରକୁ ମନ୍ତ୍ରୀକୁ କନ୍ୟା ଗହଣରେ ଯିବାକୁ ଆଦେଶ ହେଲା । କୁମ୍ଭାରମାନେ ରାଜି ନ ଥିଲେ । ରାଜପୁତ୍ରର ପ୍ରରୋଚନାରେ ସେମାନେ ରାଜିହେଲେ । ସେ ଜଳଯାତ୍ରା ପାଇଁ ସମ୍ମତି ଦେଲା ।

ଦୁଇଟି ବଡ଼ ବଡ଼ ଘର ଡଙ୍ଗା ଯୋଡ଼ା ହେଲା । ଗଛ ଡଙ୍ଗାରେ ବିଭିନ୍ନ କୋଠରୀ । ଗୋଟିଏ ମନ୍ତ୍ରୀ ଝିଅପାଇଁ ଉଦ୍ଦିଷ୍ଟ । ସେ ଡଙ୍ଗାରେ ନାଉରୀ ବି ସ୍ତ୍ରୀ ଲୋକ । ଆଗ ଡଙ୍ଗାରେ ନାବିକ ଓ ରାଜପୁତ୍ର । କେତେକ ସୈନ୍ୟ ଯାଉଥାନ୍ତି । ମନ୍ତ୍ରୀଙ୍କ ଆଦେଶ ଥିଲା—ମଧ୍ୟ ରାତିରେ ଗଭୀର ନଦୀରେ ଡଙ୍ଗା ଗଲାବେଳେ, ସେମାନେ ରାଜପୁତ୍ରକୁ ନଦୀ ବକ୍ଷକୁ ଠେଲି ଦେବେ, ଯେପରି ତାକୁ କୁମ୍ଭୀର ଖାଇଦେବ । ସେ ଖବର ସେମାନେ ମନ୍ତ୍ରୀଙ୍କ କନ୍ୟାକୁ ଦେଇଦେବେ । ଏ କାର୍ଯ୍ୟ କରିପାରିଲେ ଉତ୍ତମ ପୁରସ୍କାର ମିଳିବ । ଏ ଆଦେଶ କଥା ଯେ ପ୍ରକାଶ କରିବ, ତାର ମୁଣ୍ଡ କଟାଯିବ ।

ଏ ପ୍ରକାର ଆଦେଶ ପାଳନ କରିବାକୁ ନାବିକମାନେ ପ୍ରଥମେ ଅନିଚ୍ଛୁକ ଥିଲେ । କିନ୍ତୁ ମନ୍ତ୍ରୀ ସେମାନଙ୍କୁ ସଫା ସଫା କହିଦେଲେ ଯେ, ଯଦି ସେମାନେ ତାଙ୍କ ଆଦେଶ ପାଳନ ନ କରନ୍ତି ତାହା ହେଲେ ତାଙ୍କୁ ମୃତ୍ୟୁଦଣ୍ଡ ଦିଆଯିବ । ସେମାନେ ଉପାୟହୀନ । ଶେଷକୁ ସମ୍ମତ ହେଲେ । ଜଳଯାତ୍ରା ଆରମ୍ଭ ହେଲା, କିନ୍ତୁ ଯାତ୍ରା ପୂର୍ବରୁ ମନ୍ତ୍ରୀଙ୍କ ଝିଅ ଏ ଖବର ଗୁପ୍ତରେ ସଂଗ୍ରହ କରି ନେଇଥିଲା ।

କିଛିଦିନ ପରେ ସେମାନେ ଗୋଟିଏ ସହରରେ ପହଞ୍ଚିଲେ । ମନ୍ତ୍ରୀଙ୍କ ଝିଅ ଆଦେଶରେ ଡଙ୍ଗା ସେଠି କିଛିଦିନ ଅଟକାହେଲା ।

ତାଙ୍କର ବରାଦାନୁଯାୟୀ ସିନ୍ଦୁକଟିଏ ତିଆରି ହେଲା । ସେଇଟି ତାଙ୍କ ଡଙ୍ଗାରେ ରଖା ହେଲା । ଏଇ ରହିବା ଭିତରେ ରାଜପୁତ୍ର ମନ୍ତ୍ରୀ ଝିଅ ସହିତ ମିଶେ । ମନ୍ତ୍ରୀ ଝିଅ ତାକୁ କପଟରେ ହତ୍ୟା କରାଯିବାର ବ୍ୟବସ୍ଥା କରାଯାଇଛି, ତାହା ଜଣାଇ ଦେଲା ।

ସେଇ ସହରଠାରୁ ନଦୀ ଖୁବ୍ ଗଭୀର । ସ୍ରୋତ ପ୍ରଖର । କୁମ୍ଭୀରପୂର୍ଣ୍ଣ । ସମସ୍ତେ ମଣିଷଖିଆ । ପାଣିକୁ ଡେଇଁଲେ ନିସ୍ତାର ନାହିଁ ।

ସେଦିନ ଅମାବାସ୍ୟାର ରାତି । ଗଭୀର ଅନ୍ଧାର । ମୁହଁକୁ ମୁହଁ ଦିଶୁନାହିଁ । ରାତି ଅଧିକ ହେଲାଣି । ରାଜପୁତ୍ର ଡଙ୍ଗାର ମଙ୍ଗ ଉପରେ ଶୋଇଯାଇଥାଏ । ସେ ଜାଣେ, ସେଇ ରାତିରେ ନାବିକମାନେ ତାକୁ ପାଣିରେ ଫିଙ୍ଗୀ ଦେବେ । ସେଥିପାଇଁ ସେ ପ୍ରସ୍ତୁତ । ମନ୍ତ୍ରୀ କନ୍ୟା ଗୋଟିଏ ଦଉଡ଼ି ତାର କୋଠରୀରୁ ପାଣିକୁ ଝୁଲାଇ ଦେଇଥାଏ, ରାଜପୁତ୍ରକୁ ସାହାଯ୍ୟ କରିବା ନିମନ୍ତେ ।

ନାବିକମାନଙ୍କୁ ପୁରସ୍କାର ନିଶା ତ ଲାଗିଛି । ଦେଖିଲେ ରାଜପୁତ୍ର ଶୋଇ ଯାଇଛି । ହେଲା ସେମାନେ କଲେନାହିଁ । ତାକୁ ପାଣିକୁ ଠେଲିଦେଲେ । ସେ ତ ହୁସିଆର ଥିଲା । ସେଇଠୁ ପାଣିରେ ବୁଡ଼ି ବୁଡ଼ି ଆଉ ଡଙ୍ଗା ପର୍ଯ୍ୟନ୍ତ ଗଲିଗଲା । ଦଉଡ଼ିକୁ ଧରି ମନ୍ତ୍ରୀ କନ୍ୟାର କୋଠରୀକୁ ଉଠିଗଲା । ମନ୍ତ୍ରୀ କନ୍ୟା ତାକୁ ସିନ୍ଦୁକରେ ରଖି ତାଲା ପକାଇ ଦେଲା । ଅନ୍ଧାର ରାତି । ସମସ୍ତେ ଶୋଇଯାଇଥିଲେ । ତେଣୁ କେହି ଏ କଥା ଜାଣି-ପାରିଲେନାହିଁ ।

ରାଜପୁତ୍ର ଯେ ମୃତ, ଏଥିରେ ନାବିକମାନେ ନିଃସନ୍ଦେହ । ପରଦିନ ସକାଳେ ସେମାନେ ମନ୍ତ୍ରୀ କନ୍ୟାକୁ ଏ ଖବର ଦେଲେ । ମନ୍ତ୍ରୀ କନ୍ୟା ଦୁଃଖିତ ବୋଲି ଦେଖାଇ ହେଲା । ସେ ଚୁପ୍ ହୋଇ

ବସି ରହିଲା । ସେଇଦିନୁ ସେ ଏକାକୀ ରହିବାକୁ ଚାହେଁ । ଏପରିକି ପରିଚାରିକାମାନଙ୍କୁ ସେ କୋଠରୀକୁ ଯିବାକୁ ବି ମନା । ଖାଦ୍ୟ ଖାଲି ସେଠି ଥୋଇ ଦେଇ ଆସିବାକୁ ତାର ଆଦେଶ ।

ସମସ୍ତେ ଚାଲିଗଲେ, ସେ କବାଟ ବନ୍ଦ କରିଦିଏ । ସିନ୍ଦୁକ ଖୋଲେ । ରାଜପୁତ୍ର ସିନ୍ଦୁକରୁ ବାହାରିଲେ, ଉଭୟେ ଖାଆନ୍ତି ଆଉ ଆନନ୍ଦରେ ରୁହନ୍ତି ।

ନାବିକମାନେ ଡଙ୍ଗା ରାଜଧାନୀକୁ ଫେରାଇ ଆଣିଲେ । ସମସ୍ତ କଥା ମନ୍ତ୍ରୀଙ୍କୁ ଜଣାଇଦେଲେ । ରାଜପୁତ୍ରର ମୃତ୍ୟୁ ଖବର ଶୁଣି ମନ୍ତ୍ରୀ ବ୍ୟଥିତ ବୋଲି ଛଳନା କଲେ । ତାପରେ ଝିଅକୁ ଘରକୁ ପଠାଇ ଦେଲେ । ଝିଅ ଚାଲିବେଳେ ତା ସାଥିରେ ସିନ୍ଦୁକଟି ତା ରହିବା ଘରକୁ ନେଇଗଲା । କିଛିଦିନ ପରେ ମନ୍ତ୍ରୀ ଝିଅଟି ରାଜପୁତ୍ରକୁ ଗୋଟିଏ ପରିଚାରିକାର ବେଶ ପିନ୍ଧାଇ ତାଙ୍କୁ ବାହାରକୁ ପଠାଇ-ଦେଲା । ସେଇଦିନ ବାହାରକୁ ବଢେଇ ଦେଇ ତାଙ୍କୁ ନିଜର ପରିଚାରିକାର ନିଯୁକ୍ତ କରିଦେଲା । ଏକଥା କେହି ଜାଣିପାରିଲେ ନାହିଁ ।

ଏଥର ସେମାନଙ୍କର ରହିବାରେ ଅସୁବିଧା ହୁଏ ନାହିଁ ରାଜପୁତ୍ର ତା ଜୀବନର ପ୍ରତିଟି କଥା ମନ୍ତ୍ରୀ ଝିଅକୁ କହି ସାରିଥାଏ । କନ୍ୟାଟି ଜଣେ ରାଜପୁତ୍ରକୁ ସ୍ୱାମୀ ଭାବରେ ଗ୍ରହଣ କରିଥିବାରୁ ଭାରି ଖୁସି ।

ଦିନେ ମନ୍ତ୍ରୀଙ୍କ ଝିଅ କହିଲା—ତାଙ୍କ ଦେଶର ପୂର୍ବତନ ରାଜା ଅପୁତ୍ରିକ ଥିଲେ । ତାଙ୍କର କାଳ ହେଲା ପରେ ରାଜା କିଏ ହେବ, ସମସ୍ତଙ୍କର ସେ ବିଷୟରେ ଚିନ୍ତାଥାଏ । ଏ ଦେଶର ପ୍ରଥା, ରାଜା ଅପୁତ୍ରିକ ହୋଇ ମୃତ୍ୟୁ ହେଲେ, ଧଳାହାତୀ ଯାହାକୁ ସମ୍ମାନ ଦେବ, ସେ ରାଜା ହେବ । ରାଇଜର ଲୋକ ଗଲେ, ଧଳାହାତୀ

ଅନାଇଲା ନାହିଁ । ବିଦେଶୀମାନଙ୍କୁ ବି ନିଆଗଲା । ଆମ ରାଜା ବିଦେଶୀ । ସେତିକିବେଳେ ସେ ଏଠି ଆସି ପହଞ୍ଚିଥିଲେ । ତାଙ୍କୁ ହାତୀ ପାଖକୁ ନିଆଗଲା । ଧଳା ହାତୀ ତାଙ୍କୁ ଆଣ୍ଠୁ ପକାଇ ସମ୍ମାନ ଦେଖାଇଲା । ସେଇଦିନୁ, ସେ ଏଇ ଦେଶର ରାଜା । ସେ ବିଦେଶୀ ହେଲେ ବି ଭାରି ଭଲ ଲୋକ ।

ରାଜପୁତ୍ର ସବୁ ମନ ଦେଇ ଶୁଣିଲା । ମନେ ମନେ ଭାବିଲା— ବଡ଼ଭାଇ ତ ରାଜା ହେବାର କଥା । ସେ କଣ ଏଇଠି ଆଉ ରାଜା ହୋଇଛି ? ସେ ଯେତିକି ଭାବିଲା, ସେତିକି ସନ୍ଦେହ ତାର ବଢ଼ିଲା । ଶେଷକୁ ରାଜାଙ୍କ ସାଙ୍ଗରେ ଯୋଗସୂତ୍ର ସ୍ଥାପନ କରିବାକୁ ସେ ଯତ୍ନବାନ ।

ଖବର ନେଲା ଯେ, ରାଜାଙ୍କର ଫୁଲ ପ୍ରତି ଭାରି ସଉକ । ସେଥିପାଇଁ ତାଙ୍କ ମାଳୀର ଝିଅ ଆମ ମନ୍ତ୍ରୀଙ୍କ ବଗିଚାରୁ ଫୁଲ ନିଏ । ତାକୁ ମାଳ ଗୁନ୍ଥି ରାଜାଙ୍କ ପାଖକୁ ପଠାଏ ।

ରାଜପୁତ୍ରତ ଚାକରାଣୀ ବେଶରେ ଥାଏ । ତାକୁ ମାଳୀଝିଅ ସଙ୍ଗେ ମିଶିବାକୁ କିଛି ଅସୁବିଧା ହେଲା ନାହିଁ । ତେଣୁ ସେ ମାଳୀ-ଝିଅର ସାଙ୍ଗ ଅଳ୍ପେକେଶରେ ହୋଇଗଲା । ଏବେ ସେ ମାଳୀଝିଅ ସାଥିରେ ମିଶି ଫୁଲ ତୋଳେ । ଦିନେ ସେ ମାଳୀ ଝିଅକୁ କହିଲା "ସବୁ ଦିନ ତୁ ମାଳ ଗୁନ୍ଥୁଛୁ । ମୁଁ ବି ବଢ଼ିଆ ମାଳ ଗୁନ୍ଥି ଜାଣେ । ମୁଁ ତୋ ସାଙ୍ଗେ ଆଜି ଫୁଲତୋଡ଼ା କରିଦେବି । ତୁ ତାକୁ ରାଜାଙ୍କ ପାଖକୁ ପଠାଇବୁ ।"

ମାଳୀଝିଅଟିର ବେରାଜି ହବାର କାରଣ କିଛି ନ ଥିଲା । ଏକାକୀ ମାଳ ଗୁନ୍ଥି ଗୁନ୍ଥି ତାକୁ ବିରକ୍ତ ଲାଗେ । ଅନ୍ୟ ଜଣେ ତା ପାଇଁ କାମ କରି ଦେଉଥିବାରୁ ସେ ଖୁସି । ଚାକରାଣୀ ଗୋଟିଏ ଫୁଲ ତୋଡ଼ା କରିଦେଲା । ପ୍ରକୃତରେ ସେଇଟି ଭାରି ସୁନ୍ଦର,

ଲୋଭମୟ ହୋଇଥାଏ । ମାଳି ଝିଅଟି ତାକୁ ନେଇ ତା ବାପାକୁ ଦେଲା । ବାପା ତାକୁ ନେଇ ରାଜାଙ୍କୁ ଦେଲା ।

ରାଜା ଏ ଫୁଲତୋଡ଼ା ଦେଖି ଆଶ୍ଚର୍ଯ୍ୟ । କିଏ କରିଚି, ତା ସେ ଜାଣିବାକୁ ଚାହିଁଲେ । ମାଳିଟି କହିଲା "ମହାରାଜ ! ମୋ ଝିଅ ଏଇଟିକି କରିଚି ।" ରାଜା ବିଶ୍ୱାସ କଲେ ନାହିଁ । ବରଂ କହିଲେ-"ଏହାର ସତ୍ୟତାପାଇଁ ତାକୁ ଆଉ ଗୋଟିଏ ଫୁଲତୋଡ଼ା କାଲି ଆଣିବାକୁ ହେବ । ନ ଆଣିଲେ ତାର ମୁଣ୍ଡକାଟ କରାଯିବ ।"

ଏ ଆଦେଶ ଶୁଣି ମାଳିଟି କାନ୍ଦିଲା । ଧାଇଁଲା—ଏକା ନିଃଶ୍ୱାସକେ ଘରକୁ । ଝିଅକୁ ସବୁ କଥା କହିଲା । କାଲି ପାଇଁ ଆଉ ଗୋଟାଏ ତୋଡ଼ା କରିବାକୁ ତାର ବିବାଦ ।

ପରଦିନ ସକାଳେ ମାଳି ଝିଅଟି ସବୁକଥା ଚାକରାଣୀକି କହିଲା । ତାକୁ ଆଉ ଗୋଟିଏ ଫୁଲ ତୋଡ଼ା କରି ଦେବାକୁ ଅନୁରୋଧ କଲା । ଛଦ୍ମବେଶୀ ଚାକରାଣୀ ଏଥର ଦୃଢ଼ ଯେ, ରାଜା ତାର ଭାଇ । ତେଣୁ ସେ ପୁଣି ଗୋଟିଏ ଫୁଲତୋଡ଼ା କରିଦେଲା । ତା'ର ନାଁ ଖଣ୍ଡେ କାଗଜରେ ଲେଖି ତା ଭିତରେ ପୂରାଇ ଦେଲା । ମାଳି ଫୁଲତୋଡ଼ା ଧରି ପୁଣି ଚାଲିଲା ରାଜ ଦରବାରକୁ ।

ରାଜା ଫୁଲତୋଡ଼ା ଦେଖି ଖୁସି । ତା ଭିତରେ ଥିବା କାଗଜରୁ ଭାଇ ସେଠି ଥିବା କଥା ବି ଜାଣିଲେ । ମାଳିକୁ ପଚାରିଲେ "ସତ କହ କିଏ ଏ ଫୁଲତୋଡ଼ା କରିଛି ? ନ ହେଲେ ତୋତେ ମୃତ୍ୟୁ ଦଣ୍ଡ ଦିଆଯିବ ।"

ପ୍ରଥମେ ପ୍ରଥମେ ତାର ଝିଅ ତୋଡ଼ାଟି କରିଛି ବୋଲି ମାଳି କହୁଥିଲା । କିନ୍ତୁ ରାଜାଙ୍କର ଏଥିରେ ବିଶ୍ୱାସ ନ ହେବାରୁ ବାଧ୍ୟ ହୋଇ ଶେଷରେ ମାଳିଟି କହିଲା "ମହାରାଜ ! ମନ୍ତ୍ରୀଙ୍କ ଝିଅ ଏକ ଚାକରାଣୀ ରଖିଛନ୍ତି । ସେ ମୋ ଝିଅ ସହିତ ଫୁଲ ତୋଳେ ।

ମୋ ଝିଅର ସେ ଘର ସାଙ୍ଗ । ସେ ଫୁଲତୋଡ଼ା କରି ମୋ ଝିଅକୁ ଦିଏ ।"

ଏହା ଶୁଣି ରଜା ଖୁସି ହେଲେ । ଉପହାର ବି ତାଙ୍କୁ ବହୁତ ଦେଲେ । ତା ପରେ ନିଜକୁ ଯିନେ ମାଳି ବେଶ କରି ମାଳି ଝିଅ ସାଥିରେ ଫୁଲ ତୋଳିବାକୁ ମନ୍ତ୍ରୀଙ୍କ ବଗିଚକୁ ଗଲେ । ସେଠି ମନ୍ତ୍ରୀଙ୍କ ଝିଅର ଚାକରାଣୀ ସାଥିରେ ତାଙ୍କର ଦେଖା ହେଲା । ଉଭୟେ ଉଭୟଙ୍କୁ ଚିହ୍ନିଲେ । ରାଜା ଉଆସକୁ ଫେରି ଆସିଲେ ।

ସୈନ୍ୟମାନଙ୍କୁ ପଠାଇ ମନ୍ତ୍ରୀଙ୍କ ଝିଅର ଚାକରାଣୀକୁ ଧରି ଆଣିଲେ । ସେ ଉଆସରେ ପହଞ୍ଚି ତାର ବେଶ ବଦଳାଇ ଦେଲା । ଦୁଇ ଭାଇ ଏଥର ମହା ଖୁସି ।

ରାଜପୁତ୍ରକୁ ହତ୍ୟା କରିବାର ଯୋଜନା କରିଥିବାରୁ ମନ୍ତ୍ରୀଙ୍କୁ ଦୋଷୀ ସାବ୍ୟସ୍ତ କରାଗଲା । ତାଙ୍କୁ ମୃତ୍ୟୁ ଦଣ୍ଡ ଦେବାକୁ ରାଜା ଆଦେଶ ଦେଲେ । କିନ୍ତୁ ଝିଅର ପ୍ରାର୍ଥନା ଫଳରେ ମନ୍ତ୍ରୀଙ୍କୁ ପ୍ରାଣ-ଦଣ୍ଡ ଦିଆ ନଯାଇ ନିର୍ବାସନ ଦଣ୍ଡ ମିଳିଲା । ସେ ଦେଶ ଛାଡ଼ି ଚାଲିଗଲେ ।

ସାନଭାଇକୁ ରାଜା ମନ୍ତ୍ରୀ ଭାବରେ ନିଯୁକ୍ତ ଦେଲେ ।

ପାରା ଓ ଚଟିଆର ଭବିଷ୍ୟତ ବାଣୀ ଅକ୍ଷରେ ଅକ୍ଷରେ ସତ୍ୟ ବୋଲି ପ୍ରତିପାଦିତ ହେଲା । ଏଥର ବଡ଼ଭାଇ ରାଜା ଓ ସାନଭାଇ ମନ୍ତ୍ରୀ । ଅବଶ୍ୟ, ନିଜ ଦେଶରେ ସିନା ହେଲେ ନାହିଁ, କିନ୍ତୁ ଯେଉଁଠି ହେଲେ ତ ହେଲେ ।



## ଯନ୍ତ୍ରାଙ୍କା

ବହୁଦିନ ତଳେ ଗୋଟିଏ ରାସ୍ତା ଥିଲା । ସେ ରାସ୍ତାରେ ଯେ

ଯାଏ, ସେ ମରେ । ସେ ରାସ୍ତାରେ ଫେରିବା କଥା କେହି କେବେ ଜାଣି ନାହାନ୍ତି ।

ଅନେକ କହନ୍ତି, ସେ ରାସ୍ତାରେ ସାପ ରହେ । ଯେ ଯାଏ, ତାକୁ ସାପ ଖାଏ । କେତେକଙ୍କ ମତରେ ତାହା ଭୟଙ୍କର ବାଘଙ୍କର ଆଶ୍ରୟସ୍ଥଳୀ । ପଥିକ ଗଲେ ତାକୁ ସେମାନେ କାମୁଡ଼ନ୍ତି, ଲୋକ ବଞ୍ଚେ ନାହିଁ । ଏ କଥା ସତ ଯେ, ସେ ରାସ୍ତାରେ ଗଲେ ନିସ୍ତାର ନାହିଁ । ମୃତ୍ୟୁ ଅନିବାର୍ଯ୍ୟ ।

ଥରେ ସେଇ ରାସ୍ତାରେ ଗୋଟିଏ ବୁଢ଼ା ଯାଉଥିଲା । ଅଧିକ ବୟସ ଯୋଗୁ ଚମ ତାର ଧୁଡ଼ୁ ଧୁଡ଼ୁ । କିନ୍ତୁ ସେ ଭାରି ସାହସୀ, ନିର୍ଭିକ । ରାସ୍ତାରେ ସବୁ କିଛି ଠିକ୍‌ନଖି କରି ଦେଖି ଦେଖି ସେ ଆଗେଇଥାଏ ।

ସେ ଚାଲି ଚାଲି କ୍ଳାନ୍ତ, ଅବସନ୍ନ । ଶେଷରେ ରାସ୍ତାକରର ଗୋଟିଏ ପଥର ଉପରେ ସେ ବିଶ୍ରାମ ନେଲା । ତାପରେ ତା ପାଖ ଦେଇ ବାଘଟିଏ ଗଲା । ତାକୁ ସେ ଅନାଇଥାଏ ଏକା ଆଖିରେ । ବାଘଟି ଖୁବ୍ ବଡ଼ । ଗୋଟିଏ କୁକୁଡ଼ା ପରି । ହଠାତ୍ ସେ ବାଘଟି ସାପ ହୋଇଗଲା । ସେ ପୁଣି ଏକ ବିଷାକ୍ତ ଓ ଭୟଙ୍କର ସାପ । ବୁଢ଼ାଟି ବିସ୍ମିତ । ସେ ଦେଖୁଥାଏ, ସାପଟି ଧୀରେ ଧୀରେ ଆଗକୁ ଚାଲିଲା । ବୁଢ଼ା ଏଇ ରୂପ ପରିବର୍ତ୍ତନର ରହସ୍ୟ କିଛି ବୁଝି ପାରିଲା ନାହିଁ । ସେଇଟି ପ୍ରକୃତରେ କ'ଣ ଜାଣିବାକୁ ତାର ଭାରି ଆଗ୍ରହ । ସେଥିପାଇଁ ସେ ବି ତା ପଛେ ପଛେ ଚାଲିଲା ।

ସାପଟି ଚାଲିଥାଏ, ଦିନ ରାତି ସବୁବେଳେ । ବିଶ୍ରାମ ତାର ଦରକାର ପଡ଼େ ନାହିଁ । ବୁଢ଼ାଟି ବି ତା ପଛେ ପଛେ ଚାଲି ଭଲ ଲାଗିଥାଏ । ସାପଟି ବାଟରେ ଗୋଟିଏ ଧର୍ମଶାଳାରେ ପଶିଗଲା ।

ସେଠି ବହୁତ ଯାତ୍ରୀ ବିଶ୍ରାମ ନେଉଥାଆନ୍ତି । ତାର ଦଂଶନ ଫଳରେ ସମସ୍ତଙ୍କର ମୃତ୍ୟୁ ଘଟିଲା । ତାପରେ ଦିନେ ଯାଇ ସେ ପଶିଲା ରାଜଉଆସରେ । ସେତେବେଳକୁ ରାଜା ନିଦ୍ରା ଯାଇଥାଆନ୍ତି । ସାପ ଫେରିଲା, ହେଲେ ରାଜା ଆଉ ନିଦରୁ ଉଠିଲେ ନାହିଁ । ତାପରେ ସେ ପଶିଲା ରାଣୀହଂସପୁରରେ । ସେଇ ଦିନ ରାଜାଙ୍କର ସାନଝିଅର କାଳ ହୋଇଗଲା ।

ସେ ସାପ ଯେଉଁଆଡ଼େ ଯାଏ, ସିଆଡ଼େ କାନ୍ଦ ବୋବାଳି ପଡ଼େ । କିନ୍ତୁ ସାପର ଚିହ୍ନ ଶିଥିଳ ହୁଏ ନାହିଁ । ତାହା ଅପରିବର୍ତ୍ତିନୀୟ । ବୁଢ଼ାଟି କିନ୍ତୁ ଛାଇ ଭଳି ତାର ପିଚ୍ଛା ଧରିଥାଏ ।

ସେମାନେ ଯାଇ ଗୋଟିଏ ନଈ ପାଖରେ ପହଞ୍ଚିଲେ । ନଈଟି ଖୁବ୍ ବଡ଼ । ଅକାତକାତ ପାଣି । ସୁଅ ବି ପ୍ରଖର । ସାପ ମୁଣ୍ଡ ଦିଖଣ୍ଡ ହେଲାଭଳି । ଏପଟ କୂଳରେ ବହୁତ ଲୋକ । ସେମାନେ ଗରିବ । ଘାଟ ବାଲାକୁ ପଇସା ଦେବାକୁ ଅକ୍ଷମ । ତେଣୁ ସେମାନେ ସେଠି ବସି ପାରି ହେବାପାଇଁ ଉପାୟ ପାଞ୍ଚୁଥାଆନ୍ତି ।

ହଠାତ୍ ସାପଟି ଗୋଟିଏ ସୁନ୍ଦର ମଇଁଷି ହୋଇଗଲା । ପିତଳର ଘଣ୍ଟି ଆଉ କଉଡ଼ିର ମାଳ ତା ବେକରେ ଝୁଲୁଥାଏ । ସେ ନଈକୂଳରେ ଯାଇ ଠିଆ ହେଲା । ଅପେକ୍ଷାରତ ବାଟୋଇ ମାନେ ଭାବିଲେ, ମଇଁଷିଟି ତ ଆରପଟକୁ ଯିବ । ତା ଉପରେ ବସିଗଲେ, ନଈ ପାରି ହେବାକୁ ଅସୁବିଧା ହେବ ନାହିଁ । ତେଣୁ ସେମାନେ ତା ପାଖକୁ ଗଲେ । ମଇଁଷିଟିତ ସୁଧାର । ଲୋକଙ୍କୁ ଦେଖି ହୁରୁଡ଼ିଲା ନାହିଁ । ସେ ପାଣିରେ ପଶିଲା । ପଞ୍ଚେ ତାଉପରେ ବସିଲେ । ଆଉ କେତେକ ତାର ଲାଞ୍ଜ ଧରିଲେ । ମଇଁଷିଟି ପହଁରି ପହଁରି ନଈ ମଝିକୁ ଗଲା । ସେଇଠି ସେ ନାଚ ମାରିବାକୁ ଆରମ୍ଭ କଲା । ଉପରୁରେ ଲୋକେ ଲାଙ୍ଗୁଡ଼ ଛାଡ଼ିଦେଲେ । ତାପରେ

ସେ ପାଣିରେ ବୁଡ଼ିଗଲା । ତା ଉପରେ ବସିଥିବା ଲୋକେ ଭାସିଗଲେ । ଆଉ କେତେକ ବୁଡ଼ିଗଲେ ।

ବୁଢ଼ାଟି ନଈ ପାର ହୋଇ ଆରପଟେ ପହଞ୍ଚିଲା । ସେଠି ପହଞ୍ଚି କିନ୍ତୁ ମଇଁଷିକୁ ଦେଖିଲା ନାହିଁ । ବରଂ ତା ବଦଳରେ ସେଠାରେ ଗୋଟିଏ ବଳଦ ଠିଆ ହୋଇଥିଲା । ତା ପାଖରେ କେହି ନ ଥାଆନ୍ତି । ଗୋଟିଏ ଚାଷୀ ସେ ବାଟେ ଯାଉଥିଲା । ବଳଦଟିକୁ ଦେଖି ତାର ଭାରି ଲୋଭ ହେଲା । ତାକୁ ସାଥିରେ ନେଇ ସେ ଘରକୁ ଗଲା ।

ଚାଷୀଟିର ଗୁହାଳରେ ଗୋଟେ ଗୋରୁ । ବଳଦକୁ ନେଇ ସେ ସେଠେ ବାନ୍ଧିଦେଲା । ମାଗଣାରେ ସୁନ୍ଦର ବଳଦଟିଏ ପାଇ ଯାଇ-ଥିବାରୁ ସେ ଭାରି ଖୁସି । ଗୋରୁଟି ଭାରି ସୁଧାର । ଅନ୍ୟ ଗୋରୁ-ମାନଙ୍କୁ ଦେଖି ହୁରୁଡ଼ୁ ନାହିଁ । ଯାହା ଦେଲେ ଖାଏ । ଯେଉଁଠି ବାନ୍ଧିଦେବ, ସେଠି ରହିଯିବ । ତାର ଅସୁବିଧା କିଛି ନାହିଁ । ଗୋରୁଟି ପାଇଁ ଚାଷୀଟି ନିଜକୁ ଭାଗ୍ୟବାନ ମନେ କରୁଥାଏ ।

ବଳଦଟି ଗୋରୁମାନଙ୍କ ଗହଣରେ ଗୁହାଳରେ ଥାଏ । ସେତେବେଳକୁ ରାତି ଅଧ । ସମସ୍ତେ ନିଦରେ ଶୋଇଗଲେଣି । ବଳଦଟି ସାପ ହୋଇ ଗୋରୁମାନଙ୍କୁ କାମୁଡ଼ିଲା । ସେମାନେ ଛଟପଟ ହେଲେ । କେହି କିନ୍ତୁ ଜାଣିପାରିଲେ ନାହିଁ । ରାତିକ ଭିତରେ ଗୁହାଳ ଖାଲି । ଗୋରୁଯାକ ମରିକରି ଶୋଇଲେ । ସମସ୍ତେ ମରିଲା ପରେ ସାପଟି ବାହାରି ଆସି ପୁଣି ଚାଲିଲା । ବୁଢ଼ାଟି ତ ତାକୁ ଅପେକ୍ଷା କରିଥାଏ ; ସେ ବି ତା ପଛେ ପଛେ ଗଲା ।

କେତେ ବାଟ ଗଲାପରେ ଆଉ ଗୋଟିଏ ନଈ ପଡ଼ିଲା । ସାପଟି ସେଠି ଗୋଟିଏ ଝିଅ ହୋଇଗଲେ । ଝିଅଟି ଅପୂର୍ବ ସୁନ୍ଦରୀ । ବହୁ

ମୂଲ୍ୟବାନ ଅଳଙ୍କାର ପରିହିତା । ନଈକୂଳରେ ବସି ଝିଅଟି କାନ୍ଦିବାକୁ ଲଗିଲା । ସେତିକିବେଳେ ସେବାଟେ ଦୁଇଜଣ ସୈନିକ ଯାଉଥାଆନ୍ତି । ସେମାନେ ଦୁଇଭାଇ । ଝିଅଟି କାନ୍ଦୁଥିବାର ଦେଖି ସେମାନେ ତା ପାଖକୁ ଆସିବେ । କାନ୍ଦିବାର କାରଣ ତାକୁ ପଚାରିଲେ । ଝିଅଟି କହିଲା, ସେ ନବ ବିବାହିତା । ସ୍ୱାମୀ ସାଥିରେ ଘରକୁ ଯାଉଥିଲା । ନଈ କୂଳରେ ଡଙ୍ଗାକୁ ଅପେକ୍ଷା କରିଥିଲେ । ସ୍ୱାମୀ ତାର ଧୋଇଧାଇଁ ହେବାପାଇଁ ନଈକୁ ଗଲେ । ସେଠି ଗୋଡ଼ ଖସିଯିବାରୁ ନଈରେ ଭାସିଗଲେ । ସେ ଏକାକିନୀ । ତାର କିଏ କେହି ନାହାନ୍ତି । ସେମାନେ ତାକୁ ଆଶ୍ରୟ ଦେଲେ, ସେ ଉପକୃତ ହେବ ।

ବଡ଼ଭାଇ କହିଲା—"ତୁମେ ଖୁବ୍ ସୁନ୍ଦରୀ । ତମକୁ ସ୍ୱାମୀ ଅଭାବ ହେବେ ନାହିଁ । ଖାଲି ତମର ରାଜି ହେବା କଥା । ତୁମେ ଯଦି ରାଜି ହେବ, ମୁଁ ତୁମକୁ ବିବାହ କରିବି । ଏ ମୋର ସାନଭାଇ । ସେ ବି ଅବିବାହିତ । ତୁମେ ଆମ ସଂସାର ଚଳାଇବ ।"

ଝିଅଟି କହିଲା—"ମୁଁ ରାଜି । କିନ୍ତୁ ଗୋଟିଏ ସର୍ତ୍ତରେ । ତମେ ମତେ ଘରକାମ କରିବାକୁ କହିବ ନାହିଁ । ମୁଁ ଯାହା ମାଗିବି ତାହା ମୋତେ ଦେବ ।"

ବଡ଼ଭାଇ ତ ତାର ସୁନ୍ଦର ରୂପରେ ମୁଗ୍‌ଧ । ସେ ଏସବୁ କଥାରେ ରାଜି ହୋଇଗଲା । କହିଲା "ମୁଁ ତମ କଥା ମାନିବି ଠିକ୍ ଦାସ ଭଳି । ବର୍ତ୍ତମାନ ଆଦେଶ ଦେଲେ ବି ପାଳନ କରିବି ।"

ଝିଅଟି କହିଲା "ମୋତେ ଭାରି ଶୋଷ । ମୁଁ ନଈ ପାଣି ପିଇ ପାରିବିନାହିଁ । ପାଖ ଗାଁରେ କୂଅ ଅଛି । ସେଠୁ ଟିକିଏ ପାଣି ଆଣିଲେ ମୁଁ ପିଅନ୍ତି ।"

ବଡ଼ଭାଇ ତତ୍‌କ୍ଷଣାତ ପାଣିପାଇଁ ଚାଲିଗଲା । ଝିଅଟି ପାଖରେ ସାନ ଭାଇକୁ ଛାଡ଼ି ଦେଇଗଲା ।

ବଡଭାଇ ଗଲାପରେ ଝିଅଟି ସାନଭାଇକୁ କହିଲା " ମୁଁ ତମକୁ ଦେଖିଲାବେଳୁ ଭଲପାଇଛି । ମୋର ତମ ବଡ଼ଭାଇକୁ ବାହା ହେବାପାଇଁ ଜମା ଇଚ୍ଛା ନାହିଁ । ତାକୁ ମୁଁ କୌଶଳ କରି ପଠେଇ ଦେଇଛି । ଆସ, ଆମେ ଦୁହେଁ ପଳାଇବା । ସେ ତ ଡେରିରେ ଫେରିବ । ଆମର ପନ୍ଥ ପାଇବନାହିଁ ।"

ସାନଭାଇ କହିଲା "ଏକଥା ହୋଇପାରିବ ନାହିଁ । ତମେ ମୋ ବଡ଼ଭାଇର ବାଗ୍‌ଦତ୍ତା । ମୋର ମା ସଦୃଶ ।"

ଏକଥା ଶୁଣି ଝିଅଟି ରାଗିଗଲା । କାନ୍ଦିବାକୁ ଆରମ୍ଭ କଲା । ସାନଭାଇ ଯେତେ ବୁଝାଇଲେ ବି ବୁଝିଲାନାହିଁ । ଖାଲି କୋହ ପରେ କୋହ ତାର ଉଠିଯାଉଥାଏ । ବଡ଼ଭାଇ ଆସିବାରୁ ସେ କାନ୍ଦି କାନ୍ଦି ତାକୁ କହିଲା "ତମର ବଡ଼ଭାଇ ବଡ଼ ବଦମାସ, ତମେ ଚାଲିଗଲାପରେ ତାଙ୍କ ସହିତ ମୋତେ ଯିବାକୁ ପ୍ରବର୍ତ୍ତାଇଲେ । ମୁଁ ରାଜି ନ ହେବାରୁ ମୋତେ ବଳାତ୍କାରରେ ନେବାକୁ ବାହାରିଲେ । କିନ୍ତୁ ରାସ୍ତାରେ ଯାଉଥିବା ଲୋକଙ୍କୁ ଦେଖି ଆଉ ଆଗେଇଲେ ନାହିଁ ।"

ସାନଭାଇ ଏସବୁ ଶୁଣି ତାଜୁବ । ସେ କ'ଣ କହିବା ପାଇଁ ବାହାରୁଥିଲା, କିନ୍ତୁ ବଡ଼ଭାଇର ତା କଥା ଶୁଣିବାକୁ ଆଉ ଧୈର୍ଯ୍ୟ ନଥିଲା । ସେ ରାଗରେ ପାଗଳ । ସାଙ୍ଗେ ସାଙ୍ଗେ ଖଣ୍ଡା ବାହାର କରି ସାନଭାଇକୁ ହାଣିବାକୁ ଉଦ୍ୟତ ହେଲା । ସାନଭାଇ ନିଜକୁ ରକ୍ଷା କରିବା ପାଇଁ ଚେଷ୍ଟାକଲା । ଦୁଇଭାଇ ଖୁବ୍ ଲଢ଼ିଲେ । ଉଭୟେ ଉଭୟଙ୍କୁ ବାରମ୍ବାର ଆଘାତ କରୁଥିଲେ । ସନ୍ଧ୍ୟାବେଳକୁ ଦୁଇଭାଇ ଢଳିପଡ଼ିଲେ ।

ଝିଅଟି ସାପ ହୋଇ ପୁଣି ଆଗେଇଲା । ବାଟରେ ସେ ନିଜେ ଗୋଟିଏ ବୁଢ଼ା ହୋଇଗଲା । ତାର ଲମ୍ବା ଲମ୍ବା ଦାଢ଼ି । ଏକଦମ ଧଳା । ସେଇ ବୁଢ଼ାଟିକୁ ଦେଖି ଏଇ ବୁଢ଼ାର ସାହସ ବଢ଼ିଗଲା । ସେ ପାଖକୁ ଯାଇ ତାର ଧଳା ଦାଢ଼ିକୁ ଧରି ପଚାରିଲା "ତୁମେ କିଏ ।"

ଧଳା ଦାଢ଼ିଥିବା ବୁଢ଼ାଟି ମୁରୁକ ମୁରୁକ ହସି କହିଲା "ଅନେକ ଲୋକ ମୋତେ ମୃତ୍ୟୁରାଜା ବା 'ଯମରାଜା' କହନ୍ତି । ମୁଁ ପୃଥିବୀକୁ ମୃତ୍ୟୁ ଆଣେ ।"

ବୁଢ଼ା କହିଲା—"ମୁଁ ଖୁବ୍ ବୁଢ଼ା । ବଞ୍ଚିବାର ଆଗ୍ରହ ନାହିଁ । ମୁଁ ତୁମ ପଛରେ ଘୁରି ଭଲ ଲାଗିରହିଛି । ତମର ଅପକର୍ମ ସବୁ ଦେଖିଛି । ଆଉ ଡେରି କରନାହିଁ । ମୋତେ ନେଇଯାଅ ।"

ଯମରାଜା ମୁଣ୍ଡ ହଲାଇ ନାହିଁ କଲେ । କହିଲେ—"ଯାହାର ବେଳକାଳ ସରିଯାଏ, ତାକୁ ହିଁ ମୁଁ ନିଏ । କିଏ କ'ଣ ଚାହିଁଲା, ସେଥିରେ ମୋର ଯାଏ ଆସେ ନାହିଁ । ତମର ବେଳ ହୋଇ-ନାହିଁ । ଆହୁରି ବର୍ଷେ ଟିଏ ଅଛି । ତମକୁ କେହି ଯମପୁରିକୁ ନେଇ-ପାରିବେନାହିଁ ।"

କଥା ଶେଷ ହେଲାବେଳକୁ ଧଳାଦାଢ଼ି ଥିବା ବୁଢ଼ାଟି ଅଦୃଶ୍ୟ ହୋଇଗଲା ।

ସେ ପ୍ରକୃତରେ ଯମରାଜା କି ପିଶାଚ—ସେ କଥା ସେଇଠି ଠିଆ ହୋଇ ବୁଢ଼ାଟି ଭାବୁଥିଲା ।



## ମେଷଶା

ବହୁଦିନ ତଳେ ଗୋଟିଏ ମୂଷା ଥିଲା । ଦେଖିବାକୁ ଭାରି

ମୋଷ୍ଟା । ନାଁ ତାର ମୋଷ୍ଟାଶା ।

ଦିନେ ସେ ବଡ଼ଘରରୁ ଖାଦ୍ୟ ସଂଗ୍ରହ ପାଇଁ ବାହାରି ପଡ଼ିଲା । ଏପଟ ସେପଟ ଖୁବ୍ ହେଲା । କିନ୍ତୁ ଖାଦ୍ୟ ପାଇଲା ନାହିଁ । ଖାଦ୍ୟ ଖୋଜି ଖୋଜି ସେ ଆଗକୁ ଆଗକୁ ମାଡ଼ି ଚାଲିଲା । ବହୁତ ଦୂର ସେ ଆସିଗଲାଣି । ସେଥିପାଇଁ ତାର ନଜା ନାହିଁ । କେଉଁଠି ଥିଲା କେଜାଣି, ହଠାତ୍ ବର୍ଷା ଅସରାଏ ଆସିଗଲା । ଗାତକୁ ଫେରିବାର ତାର ଉପାୟ ନାହିଁ । ପାଖ ବୁଦା ମୂଳକୁ ସେ ଧାଇଁଗଲା— ଟିକିଏ ଆଶ୍ରୟ ପାଇଁ । ବର୍ଷା ଲାଗି ରହିଥାଏ । ସେ ବୁଦା ମୂଳରେ ବସିଥାଏ । ବାହାରକୁ ଜୁଳୁଜୁଳୁ କରି ଅନାଉଥାଏ । ଆଖି ଆଗରେ ତାର ବର୍ଷାର ଧାର, ଗୋଳିଆ ପାଣି ଆଉ କାଦୁଅ । ତା ବ୍ୟତୀତ ଆଉ କିଛି ତାର ଦେଖିବାକୁ ନ ଥିଲା । ଗୋଟିଏ ଜିନିଷ ବହୁ ସମୟ ଧରି ଦେଖିଲେ ବିରକ୍ତି ଲାଗେ । ମୂଷାଟି ସେଥିରୁ ବ୍ୟତିକ୍ରମ ନୁହେଁ । ମନେ ମନେ ସେ ଖୁବ୍ ବିରକ୍ତ । ତା ଛଡ଼ା ଦାନ୍ତ ତାର ଶୁଳେଇ ହେଲାଣି । ଦାନ୍ତରେ ତାକୁ କିଛି ନା କିଛି କାଟିବାକୁ ହେବ । ନ ହେଲେ, ସେ ରହିପାରିବ ନାହିଁ । ତାହା ତାର ପ୍ରକୃତିର ତାଡ଼ନା । ତେଣୁ ସେ ଅସ୍ଥିର, ବ୍ୟସ୍ତବ୍ୟସ୍ତ ।

ହେଲା ଆଉ ସେ କଲା ନାହିଁ । ଗାତଟିଏ ଖୋଳିବାରେ ମନ ଦେଲା । ମାଟି ଭିତରୁ ସେ ଶୁଖିଲା ଚେରଟିଏ ପାଇଲା । ସେ ଭାରି ଖୁସି । ଅଳ୍ପକେ ସନ୍ତୁଷ୍ଟ ତାର ଅଭ୍ୟାସ । ନିଜକୁ ସେ ଭାଗ୍ୟବାନ ବୋଲି ଭାବିଲା । ବର୍ଷାଦିନେ ଜାଗା ସବୁ ଓଦା । ଶୁଖିଲା ଚେରଟିଏ ବି ଦୁଷ୍ପ୍ରାପ୍ୟ । ଅନ୍ତତଃ ଏଥିରେ ଚୂଲିଟା ଲଗାଇ ହେବ । ମନେ ମନେ ସେ ସ୍ଥିର କଲା—'ଗଲାବେଳେ ଏ ଚେରଖଣ୍ଡିକ ତା ସାଥିରେ ଗାତକୁ ନେଇଯିବ ।

ବର୍ଷା ଛାଡ଼ିଗଲା । ଆକାଶ ଏଥର ନିର୍ମଳ । ମୂଷା ତାର ଗାତକୁ ବାହାରିଲା । ଶୁଖିଲା ଚେର ଖଣ୍ଡିକ ପାଟିରେ ଧରିଥାଏ ଛୁରିଆଡ଼େ ଚାହିଁ । କାଦୁଅ । ସେଇଥିରେ ରାସ୍ତା ଦେଖି ଦେଖି ସେ ଯାଉଥାଏ । ହଠାତ୍ ବାଟରେ କାନ୍ଦଣା ଶୁଣି ସେ ଅଟକିଗଲା । ସେ ସବୁ କଥା ଜାଣିବାକୁ ଆଗ୍ରହୀ । ତେଣୁ କାନ୍ଦଣା ଆସୁଥିବା ଜାଗାକୁ ଗଲା । ଦେଖିଲା—ଗରିବ ଗୃହିଣୀଟିଏ ଚୂଲି ଲଗାଇବାରେ ବ୍ୟସ୍ତ । ଚାରିପଟେ ତାର ପିଲାମାନେ ବେଢ଼ି ରହି କାନ୍ଦୁଥାଆନ୍ତି, ଅତି କରୁଣ ଭାବରେ । ଗୃହିଣୀଟି ଚୂଲିକୁ ଫୁଙ୍କି ଫୁଙ୍କି ହାଲିଆ । ସେ ବିବ୍ରତ । ବିଚଳିତ । ମୂଷାଟି ତା ପାଖକୁ ଗଲା । ପଚାରିଲା—"କଣ ହେଲା ? ପିଲାମାନେ ବିକଳ ହୋଇ କାନ୍ଦୁଛନ୍ତି କାହିଁକି ?"

ଗୃହିଣୀଟି କହିଲା—"ପିଲାମାନେ ସକାଳୁ କିଛି ଖାଇ ନାହାନ୍ତି । ଭୋକରେ ସେମାନେ ଆଉଟୁ ପାଉଟୁ ହେଲେଣି । ଘରେ ଖାଇବାକୁ କିଛି ନାହିଁ । ଭାବିଥିଲି—ରୁଟି ଦି'ଖଣ୍ଡି ସେକି ଖାଇବାକୁ ଦେଇଥାଆନ୍ତି । ଓଦା ଜାଳ । ଚୂଲି ଲାଗୁ ନାହିଁ । ସେଥିପାଇଁ ପିଲାଙ୍କର କାନ୍ଦ ।"

ମୂଷାଟି ଦରଦୀ । ସବୁକଥା ଶୁଣିଲା ପରେ ଚେରଟି ଗୃହିଣୀକୁ ଦେଇ କହିଲା—"ଓଃ, ଏଇ ଗୋଟେ କଥା । ଏଇ ଚେର ଖଣ୍ଡିକ ନିଅ । ଚୂଲି ଲଗାଅ ।"

ଶୁଖିଲା ଚେରଟି ପ୍ରକୃତରେ ବହୁତ କାମ ଦେଲା । ସେଥିରେ ଚୂଲିଟି ଲାଗିଗଲା । ଏଥର ପିଲାମାନେ ଭାରି ଖୁସି । କାନ୍ଦ ଆପେ ଆପେ ବନ୍ଦ । ରୁଟି ଖାଇବାକୁ ସେମାନେ ପ୍ରସ୍ତୁତ ।

ଗୃହିଣୀଟି ଗଣେଶ ବାହାନକୁ ଧନ୍ୟବାଦ ଜଣାଇଲା । ରୁଟି ସେକି

ପିଲ୍ମାନଙ୍କୁ ଦେଲା । ପିଲ୍ମାନେ ଖାଇ ସାରିଲେ । ଏଥର ମୂଷାଟି ଯିବାକୁ ବାହାରିଲା ।

ଗୃହୀଟି ଭଦ୍ର, କୃତଜ୍ଞ । ମୂଷା କ୍ଷୁଦ୍ର ଜୀବ ହେଲେ ବି, ତାର ସାହାଯ୍ୟ ପାଇଁ ସେ ଅନୁରକ୍ତ । ସେ ବିନମ୍ର ଭାବରେ କହିଲା— "ମୋ ପାଖରେ ତମକୁ ଦେବାଭଳିଆ କିଛି ନାହିଁ । ଏଇ ଚକଟା ଅଟାତକ ନେଇଯାଅ ଖାଇବ ।"

ମୋଟାଶା ଚକଟା ଅଟାତକ ଧରିଲା । ପୁଣି ଚାଲିଲା ତାର ଗନ୍ତବ୍ୟ ପଥରେ । ଏଥର ସେ ଆହୁରି ଖୁସି । ସେ ଭାବୁଥାଏ— ଅଟାତକ ତାର ପାଞ୍ଚଦିନର ଖାଦ୍ୟ । ଏଇନେ ପାଞ୍ଚଦିନ ପାଇଁ ସେ ଚିନ୍ତାଶୂନ୍ୟ । ଟେର ଖଣ୍ଡିକ ଦେଇ ସେ କ୍ଷତିରେ ପଡ଼ି ନାହିଁ । ବରଂ ଲାଭବାନ୍ ହୋଇଛି ।

ହଠାତ୍ ପଞ୍ଚେ ପିଲାଙ୍କର କାନ୍ଦ ଶୁଣି ସେ ଅଟକି ଗଲା । ପାଖ କୁମ୍ଭାର ଘରୁ କାନ୍ଦଣା ଭାସି ଆସୁଥିଲା । ଜାଣିବାର ପ୍ରବଳ ଆଗ୍ରହ ଯୋଗୁ ସେ ଘରେ ପଶିଲା । ଦେଖିଲା—ବୁଢ଼ା କୁମ୍ଭାରଟି ଶୋଇଛି । ତା ପାଖରେ ପିଲାଗୁଡ଼ିଏ ଶୋଇ ରଡ଼ି ପକାଉଛନ୍ତି । ବୁଢ଼ାଟି ଥାପୁଡ଼ାଇ ଥାପୁଡ଼ାଇ ତାଙ୍କୁ ଶୁଆଇବାରେ ଚେଷ୍ଟା କରୁଛି । କିନ୍ତୁ ପାରୁ ନାହିଁ । ସେଥିପାଇଁ ମନେ ମନେ ସେ ବିରକ୍ତ । ଏଥିରୁ ମୂଷାଟି କିଛି ବୁଝିପାରିଲା ନାହିଁ । ସେ ବୁଢ଼ା ପାଖକୁ ଯାଇ ପଚାରିଲା—"ମଉସା । କ'ଣ ହେଲା ? ପିଲ୍ମାନେ ଏମିତି ରଡ଼ି ପକଉଛନ୍ତି କାହିଁକି ?"

ବୁଢ଼ାଟିର ଦୀର୍ଘନିଶ୍ୱାସ ବାହାରି ଆସିଲା ଆପେ ଆପେ । କହିଲା "ପିଲ୍ମାନଙ୍କୁ ଭାରି ଭୋକ । ଘରେ କିଛି ଖାଇବାକୁ ନାହିଁ । ମା ତାଙ୍କର ବଜାରକୁ ଅଟା ପାଇଁ କେତେବେଳୁ ଗଲାଣି । ଏ ପର୍ଯ୍ୟନ୍ତ ଫେରି ନାହିଁ । ପିଲାଙ୍କୁ ବୁଝାଇଲି । ବୁଝିଲେ ନାହିଁ ।

ଶୁଆଇବାକୁ ବ ଚେଷ୍ଟା କରୁଛନ୍ତି । ଏସାକେ ଶୋଉନାହାନ୍ତି ରଡ଼ି ପକାଉଛନ୍ତି । ମୁଁ ନାଗୁର ।"

ପିଲମାନଙ୍କର କାନ୍ଦ ଦେଖି ମୂଷାଟିକୁ ବକଳ ଲଗିଲା । ସେ ଆଣିଥିବା ଅଟାତକ ବୁଢ଼ାକୁ ଦେଇ କହିଲା "ଏତକ ଅଟା ରୁଟି କର ପିଲାଙ୍କୁ ଖାଇବାକୁ ଦିଅ । ଖଣ୍ଡେ ଖଣ୍ଡେ ରୁଟି ଆଉ ପାଣି ଢୋକେ ଢୋକେ ପିଇଦେଲେ ପିଲାଏ ଶାନ୍ତ ପଡ଼ିଯିବେ ।"

ମୂଷା ଗୋଟିଏ କ୍ଷୁଦ୍ର ଜୀବ । କିନ୍ତୁ ତାର ଉପଦ୍ରବ କମ୍ ନୁହଁ । ତେଣୁ ସେ ମଣିଷର ପରମ ଶତ୍ରୁ । ସେ ଗଚ୍ଛିତ ଶସ୍ୟ ବୋହି ନିଏ । ନଷ୍ଟ ବ ବହୁତ କରେ । ଲୁଗାପଟା କାଟିଦିଏ । ଲୋକମାନଙ୍କର ତା ଉପରେ ରାଗ ବହୁତ । କିନ୍ତୁ ତାର ପୁଣି ଅନ୍ୟ ଜୀବ ପ୍ରତି ଦୟା ଦେଖି କୁମ୍ଭାରଟି ଅଭିଭୂତ, ବିସ୍ମିତ, ସ୍ତବ୍ଧ ।

କୁମ୍ଭୀର ମୂଷାଠାରୁ ଅଟାତକ ଗ୍ରହଣ କଲା । ସାଙ୍ଗେ ସାଙ୍ଗେ ରୁଟି ଦି ଖଣ୍ଡ ସେକି ପିଲାଙ୍କୁ ଖୁଆଇଦେଲା । ପାଣି ମୁନ୍ଦେ ମୁନ୍ଦେ ପିଇ ପିଲମାନେ ଶାନ୍ତ ପଡ଼ିଗଲେ ।

ମୂଷାଟି ଏଥର ବାହାରିଲା । କୁମ୍ଭାର ଭାବିଲା—ମୂଷାଟି ତାର ବହୁତ ଉପକାର କରିଛି । ସେ ତାର ଋଣ ଶୁଝି ପାରିବ ନାହିଁ । ତା ପାଖରେ ତାକୁ ଉପହାର ଦେବାପାଇଁ ହାଣ୍ଡି ଛଡ଼ା ତ ଆଉ କିଛି ନାହିଁ । ସେ ଉହାକୁ ଗଲା । ଗୋଟିଏ ଠେକି ବାହାର କଲା । ତାକୁ ଆଣି ମୂଷାକୁ ଦେଇ କହିଲା—"ତମର ଉପକାର ମୁଁ ଶୁଝି ପାରିବ ନାହିଁ । ମୋ ପାଖରେ ତ ଆଉ କିଛି ନାହିଁ । ଖାଲି ଖାଲି ଯିବା ଅପେକ୍ଷା ଠେକିଟିଏ ନେଇଯାଅ ।"

ଠେକିଟି ଦେଖି ମୂଷା ବିଭୋର । କିନ୍ତୁ ଠେକିଟି କପରି ନେବ, ସେଇଟା ତାର ଚିନ୍ତା । କୁମ୍ଭାର ତାକୁ ସାହାଯ୍ୟ କଲା । ଠେକିଟିକୁ ସେ ମୋଟାଶାର ମୁଣ୍ଡରେ ଥୋଇଦେଲା । ନଇଁଲେ ଠେକିଟି

ପଡ଼ିଯିବ, ମୋଟାଣୀ ସେ କଥା ଜାଣେ । ସେଇ ଉପରେ ପଛ ଦି ଗୋଡ଼ରେ ସେ ଚାଲିଲା । ଆଉ ଦି ଗୋଡ଼ରେ ଠେକକୁ ଧରିଥାଏ । ସେପରି ଚାଲିବାରେ ସେ ଅନଭ୍ୟସ୍ତ । ସେଥିପାଇଁ ତାକୁ ବହୁତ କଷ୍ଟ ହେଉଥାଏ । ତଥାପି ସେ ଧୀରେ ଧୀରେ ଚାଲୁଥାଏ ।

ବାଟଯାକ ସେ ଭାବୁଥାଏ—ସେ ଭାରି ଚାଲାକ । ମୁଣ୍ଡଖେଳିବାରେ ବି ଓସ୍ତାଦ୍ । ବର୍ଷାକୁ ଚାହିଁ ଚାହିଁ ବିରକ୍ତ ହୋଇଥାନ୍ତି । ସେଥିରୁ ରକ୍ଷା ପାଇବାପାଇଁ ସେ ଗାତ ଖୋଳିଲା । ପାଇଲା—ଶୁଖିଲା ଡେରିଟିଏ । ତାକୁ ଦେଇ ପାଇଲା ଅଟା ମେଞ୍ଚାଏ । ତା ବଦଳରେ ଠେକ । କେବଳ ସେତିକି ନୁହେଁ, ସେ ଏଥର ମଣିଷପରି ଦୁଇ ଗୋଡ଼ରେ ଚାଲିବାର ସୁବିଧା ବି ପାଇଛି । ଚାରିଗୋଡ଼ିଆ କ୍ଷୁଦ୍ର ଜୀବଟିଏ ହୋଇ ଯିନା ସେ ଜନ୍ମ ହୋଇଥିଲା, ଏଇନେ ସେ ତାର ଊର୍ଦ୍ଧ୍ୱରେ । ମଣିଷ ପରି ଶ୍ରେଷ୍ଠ ଜୀବ ବି ତାକୁ ସମ୍ମାନ ଦେଉଛି । ତା ଉପକାର ଶୁଝି ପାରିବନାହିଁ ବୋଲି କହୁଛି । ଗର୍ବରେ ମୂଷାଟିର ଗୁଡ଼ ଫୁଲିଉଠେ ମୋଟ । ସେଥିପାଇଁ ପଛ ଗୋଡ଼ରେ ଚାଲିବାର କଷ୍ଟ ବି ସେ ଆଉ ଜାଣିପାରୁ ନଥାଏ ।

ସେ ଆସି ପହଞ୍ଚିଲା ଗୋଟିଏ ମଇଁଷି ଗୋଠ ପାଖରେ । ସେଠି ମଇଁଷିଆଳଟିଏ ମଇଁଷି ଦୁହିଁବାରେ ବ୍ୟସ୍ତ । ତାର ଠେକ ନଥାଏ । ତେଣୁ ସେ ଗୋଟିଏ ଜୋତାରେ ଦୁଧ ଦୁହୁଁଥାଏ । ଏହା ଦେଖି ମୂଷା ହସି ହସି ଗଡ଼ିଗଲା । ସେ ପାଟି କରିଉଠିଲା "ହୋ ବେହେବା ଭାଇ । ଜୋତାରେ କ'ଣ ଦୁଧ ଦୁହାଁ ହୁଏ ? ଏତିକି କ'ଣ ତମେ ଜାଣି-ନାହଁ । ସବୁ ଦୁଧ ବୋହିଯିବ । କିଛି ଆଉ ତମେ ପାଇବନାହିଁ ।"

ମଇଁଷିଆଳ କହିଲା—"ମଇଁଷିର ପନହା ଟାଣି ଗଲାଣି । ଦୁଧ ନ ଦୁହିଁଲେ ନ ଚଳେ । ମୋ ପାଖେ ଦୁହିଁବା ପାଇଁ ଏଠି କିଛି ଜିନଷ ନାହିଁ । କେବଳ ଜୋତାଟି ଥିଲା । ସେଥିପାଇଁ ଜୋତାରେ

ଦୁହିଁଲ ।’ ଏତକ କହି ମୁହଁ ବୁଲାଇ ଦୁଧ ଦୁହାଁରେ ସେ ମନ ଦେଲା ।

ମୋଛାଶା କହିଲା—“ନିଅ, ଏଇ ଠେକଟିକୁ ନିଅ । ଏଥିରେ ଦୁଧ ଦୁହଁ ।

ଗଉଡ଼ ଖୁସିହୋଇ ଠେକଟିକୁ ନେଇ ସେଥିରେ ଦୁଧ ଦୁହିଁଲା । ଦୁଧରେ ଠେକଟି ଭରପୂର ହୋଇଗଲା । ଗଉଡ଼ ମନରେ ଆନନ୍ଦ । ଦୁଧ ଦୁହିଁ ସାରି ସେ ମୂଷା ପାଖକୁ ଆସିଲା । ଅନୁରକ୍ତିରେ ସେ ନଇଁ ପଡ଼ୁଥାଏ । ସେ ମୂଷାକୁ କହିଲା “ମୁଁ ତୋଠାରେ କୃତଜ୍ଞ । କ’ଣ କରିବ ? ଠେକର ମୂଲ୍ୟ ଦେବାକୁ ମୋ ପାଖେ ପଇସା ନାହିଁ । ତା ବଦଳ ଆଉ କ’ଣ ବା ଦେବ ? ତୁ ଗୋଟିଏ କଥା କର । ଦୁଧ କିଛି ପିଇଦେ ।”

ଗଉଡ଼ର କଥା ମୋଛାଶା ମନକୁ ଆସିଲା ନାହିଁ । ବରଂ ଖରାପ ଲାଗିଲା । ତେଣୁ ସେ କହିଲା—“ତମର ଅସୁବିଧା ମୁଁ ସହି ପାରିଲି ନାହିଁ । ଖୁସିବାସିରେ ଠେକଟିଏ ଦେଲି । ଦାମ୍ କଥା ଉଠୁଠେଇ ନାହିଁ । ତା ଛଡ଼ା ଠେକଟି ମୋର କୌଣସି କାମରେ ଲାଗି ନ ଥାଆନ୍ତା । ଖାଲି ବୋଝଟିଏ ଅଯଥା ବୋହୁଥିଲି । ତାକୁ ଦେଇ ମୁଁ ରକ୍ଷା ପାଇଛି । ତମେ ବ୍ୟସ୍ତ ହୁଅ ନାହିଁ ।”

ଟିକଏ ରହି ମୋଛାଶା ପୁଣି କହିଲା—“ଯଦି ତମେ ଉଚିତ ମୂଲ୍ୟ ଦେବାକୁ ଏପରି ଉଚ୍ଛନ୍ନ, ତୋପେ ଦୁଧ ପିଇ ମୁଁ କୀ ପକାଇବ କାହିଁକି ? ଦେଖୁଛି, କିଛି ଦେବାପାଇଁ ତମର ଘାରି ଲାଗୁଛି । ପାଖରେ ଯଦି ଆଉ କିଛିନାହିଁ, ତମର ମଇଁଷି ତ ବହୁତ, ସେଥିରୁ ଗୋଟେ ଦେଇ ଦେଉନ ?”

ମୂଷାର କଥା ଶୁଣି ଗଉଡ଼ ଘାରି ରାଗିଗଲା । ସେ କହିଲା—

ଏତିକ ଛିକେ ଖାଉ ଛୁ । ମାଠିଆଟିଏ ନବାକୁ ତୋର ଦମ୍ ନାହିଁ । ମଇଁଷି ଟିଏ ନବୁ କେମିତି ?"

ଗଉଡ଼କଥା ମୂଷାକୁ ବେଷ୍ ବାଧିଲା । ମନେ ମନେ ସେ କ୍ଷୁବ୍ଧ ହୋଧାନ୍ୱିତ । ସେ ରୁକ୍ଷ ଭାବରେ କହିଲା—'ତମର ଯଦି ମଇଁଷି ଦେବାର କଥା ଦିଅ । ନଚେତ୍ ଚୁପ୍ ହୋଇ ରହ । ମୁଁ ମଇଁଷି ଟି ନେଇ କ'ଣ କରିବି, ସେ ମୋ କଥା । ତାକୁ ଚଳାଇବା ମୋ ଦାୟିତ୍ୱ । ସେ ସବୁ ବାଜେକଥା କହି ମଇଷି ନ ଦେବାର ଦୋଷ ମୋ ମୁଣ୍ଡ ଉପରେ ନଦ ନାହିଁ ।

ମୂଷା କଥା ଶୁଣି ଗଉଡ଼ଟି ଅବାକ୍ । ତାର ଆସ୍ପର୍ଦ୍ଧା ଦେଖି ତାଜୁବ । ଭାବି—ମଇଁଷି ଟିଏ ନେବେକ ନାହିଁ । ବହୁତ ହରହଟା ହେବ । ଶେଷକୁ ଛୁଡ଼ିଦେବ । ମଇଁଷି ତାର ଗୋଠକୁ ଫେରି-ଆସିବ । ତାର ତ କିଛି କ୍ଷତି ହେବନାହିଁ । ହେଲେ, ମୂଷାଟି ପ୍ରାଣେ ପାଇବ । ତେଣୁ ସେ ପଚାରିଲା—"ହଉ, ମଇଁଷିଟିତ ନେବୁ । କେମିତି ନେବୁ ? ତାର ପଘା ତୋ ଲାଞ୍ଜରେ କ'ଣ ବାନ୍ଧିଦେବି ?"

ମୂଷାଟି କହିଲା—"ନା । ନା ! ସେମିତି ବାନ୍ଧିଦେଲେ, ମଇଁଷି ଟି ମୋତେ ଟାଣି ଟାଣି ନେଇଯିବ । ମୋର ଉପାୟ ନଥିବ । ଘୋସାଡ଼ି ହୋଇ ହୋଇ ଦେହମୁଣ୍ଡ ଛିଣ୍ଡିଯିବ ! ବରଂ ଦଉଡ଼ି ମୋ ବେକରେ ବାନ୍ଧି ଦିଅ ।' ତା'ହେଲେ ମଇଁଷି ଟିକୁ ମୁଁ ଅଟକାଇ ନେବ ।"

ମୂଷାଟିର ବୁଦ୍ଧି ଦେଖି ମଇଁଷିଆଳଟି ବିସ୍ମିତ । ମୋଟାଶାର କଥାମାନ ମଇଁଷିର ପଘାକୁ ମୂଷା ବେକରେ ବାନ୍ଧିଦେଲା ।

ମୋଟାଶା ମନ ଭରି ଖୁସି । ଗର୍ବରେ ତାର ଗୁମ୍ଫ ଫାଟି

ପଡ଼ୁଥାଏ । ସେ ଗୃଲୁଥାଏ ଆଗେ ଆଗେ, ପଛରେ ତାର ମଇଁଷି ।
କିଛି ବାଟ ଗଲାପରେ ସେ ଟାଣିହୋଇ ଅଟକିଗଲା ।  ପଛକୁ ଗୃହିଁ
ଦେଖିଲା, ମଇଁଷି ଆଗଉନାହିଁ । ଘାସ ଖାଇବାରେ ବ୍ୟସ୍ତ ।  ମୂଷା
ଯେତେ ଡାକିଲା, ସେ ଶୁଣିଲା ନାହିଁ ।  ମୂଷା ଥରେ ବ ଟାଣି ହୋଇ
ଦେଖିଲା, କିଛି ଲାଭ ହେଉନାହିଁ ।  ମଇଁଷି ଟିକିଏ ବ ଚଳୁ ନାହିଁ ।
ସବୁ ଉଦ୍ୟମ ଆଉ ସବୁ ବ୍ୟସ୍ତତା ଲୋକହସାରେ  ପରିଣତ ହେବ ।
ସେ  ତ ଭାରି ଗୃଲାକ ।  ଦେଖିଲା,  ପାଟି କଲେ  କିଛି ଲାଭ ହେବ
ନାହିଁ ।  ବରଂ ମଇଁଷିକୁ ମନେଇବାକୁ ହେବ ।  ଆରେ ଅମାନିଆ
ହେଲେ, ସାହସ ତାର ବଢ଼ିଯିବ ।  ଆଉ ମାନିବ ନାହିଁ । ତା ଛଡ଼ା
ମଇଁଷିର ଜୋର ବହୁତ ।  ଗତି ବ ପ୍ରଖର । ସେ ରାଗିଗଲେ, ତାଙ୍କୁ
ଟାଣି ଟାଣି ନେଇଯିବ । ସେଥିରେ ମୃତ୍ୟୁ ତାର ଅନିବାର୍ଯ୍ୟ । ତାକୁ
ପୋଷା  ମନାଇବାକୁ  ହେଲେ  ତା  ମନକୁ  ଜିଣିବାକୁ  ହେବ  ।
ଆଘାତ କରି ଲାଭ ନାହିଁ ।  ବରଂ କ୍ଷତି ହେବ ।  ସେଥିପାଇଁ ସେ
ମଇଁଷିକୁ କିଛି କହିଲା ନାହିଁ ।  ଅପେକ୍ଷା କଲା । କିଛି ସମୟ ପରେ
ମଇଁଷି ପେଟେ ଘାସ ଖାଇ ମୁହିଁ ଟେକିଲା । ମୂଷା ଆଗରେ ଗୃଲିଲା ;
ପଛରେ  ତାର ମଇଁଷି ।  କିଛି  ବାଟ ଗଲାପରେ  ପୁଣି ମଇଁଷି
ଅଟକିଗଲା—ଘାସ  ଖାଇବାକୁ ।  ମୂଷାଟି  ଅପେକ୍ଷା କରିଥାଏ ।
ଅବିଚଳିତ  ଭାବରେ ।  ତା ଛଡ଼ା ଖାଇ ସାରି ତା  ମନଇଚ୍ଛାରେ
ସେ ଗୃଲିଲା । ମୂଷାଟି ସେଇଆଡ଼େ ଗଲା । ଏଥର ମୂଷା କଥା ପ୍ରତି
ମଇଁଷିର  ନଜର ନାହିଁ ।  ମୂଷାଟି ବ  ଉପାୟହୀନ ।  ମଇଁଷି
ଯୁଆଡ଼େ ଯାଏ, ମୂଷାଟି ସେଇଆଡ଼େ ଧାଏଁ ।

ଗଉଡ଼ଟି ସେମାନଙ୍କ ପଛରେ  କିଛିବାଟ ଆସିଲା ।  ମୂଷାର
ଢଙ୍ଗ ଦେଖି ପ୍ରଥମେ ପ୍ରଥମେ ତାକୁ ହସ ଲାଗୁଥିଲା । ସେ ଦେଖିଲାଣି,
ମୂଷା ମଇଁଷିର ମନ ନେବାକୁ ଚେଷ୍ଟା କରୁଛି ।  ସଫଳତାର

ସମ୍ଭାବନା ଅଧିକ । ମଇଁଷି ତା ଗୋଠକୁ ଆଉ ଫେରିବ ନାହିଁ । ଏକଥା ମନକୁ ତାର ଛୁଇଁଲାଣି । ମଇଁଷିପାଇଁ ସେ ବ୍ୟସ୍ତ, ଚିନ୍ତିତ ।

ଘାସ ଦେଖିଲେ, ମଇଁଷି ଅଟକେ । ପେଟେ ଖାଏ । ସେଇଠି ଶୋଇ ପାଗୁଳି କରେ । ବିଚରା ମୂଷାଟି । ଠେକ ବଦଳି ମଇଁଷି ପାଇଛି । ମଇଁଷି ଗୋଡ଼ରେ ତା ଗୋଡ଼ । ମଇଁଷି ବିଶ୍ରାମରେ ତାର ବିଶ୍ରାମ । ତା'ଛଡ଼ା ମଇଁଷିର ଗୋଡ଼ ବଡ଼ । ଲମ୍ବାଇ ଲମ୍ବାଇ ସେ ଚାଲେ । ମୂଷାଟି କ୍ଷୁଦ୍ର । ଗୋଡ଼ଗୁଡ଼ିକ ତାର ଅତି ଛୋଟ । ମଇଁଷି ଚାଲିଲେ ମୂଷା ଦଉଡ଼େ । ଆସ୍ତେ ଆସ୍ତେ ଦଉଡ଼ିଲେ ବି ହେବ ନାହିଁ । ଜୋରରେ ଦୌଡ଼ିବା ଦରକାର । ମଇଁଷି ସାଥିରେ ଅଳ୍ପ ସମୟ ଏପଟ ସେପଟ ହୋଇ ସେ ହାଲିଆ । ଚାଲିବାର ଶକ୍ତି ଯେମିତି ନାହିଁ । ଭାଗ୍ୟକୁ ପେଟେ ଖାଇ ମଇଁଷି ଗଛମୂଳେ ଶୋଇ ପାଗୁଳି କଲା । ସେ ରକ୍ଷା ପାଇଗଲା ।

ମଇଁଷିଟିର ସ୍ଥାନ ଓ କାଳ ଜ୍ଞାନ ନାହିଁ । ଗଉଡ଼ ତାକୁ ଦେଇ ଦେବାପରେ ମୂଷା ତାର ମାଲିକ । ସାଥିରେ ସେ ଅଛି । ସେଥି-ପ୍ରତି ମଇଁଷିଟିର ଟିକିଏ ବି ବାଧା ନାହିଁ । ମୂଷା ସେଥିପାଇଁ ଚିନ୍ତିତ ।

ସେତିକବେଳେ ବାହାଘରିଆ ଦଳ ସେଇବାଟେ ଯାଉଥିଲେ । ପାଲିଙ୍କିରେ ବୋହୂକୁ ସେମାନେ ନେଉଥାଆନ୍ତି । ଆଗଭୁଗ ବର ଓ ତା ସାଥିରେ ଥିବା ଲୋକ ଚାଲିଗଲେଣି । ପଛରେ ଏମାନେ ରହିଯାଇଛନ୍ତି । ଛୋଟ ପାଖରେ ଝରଣା ଦେଖି ସେମାନେ ଅଟକି ଗଲେ । ରନ୍ଧାବଢ଼ାର ଆୟୋଜନ ଚାଲିଲା ।

ଖାଲିରେ ବସିଲେ ବାରଆଡୁ ବାରକଥା ପଡ଼େ । ଆଲୋଚନା ଚାଲିଥାଏ—ବିଜାଘର ହେଲେ କ'ଣ ହେବ, ସେମାନେ ଘର

କୃପଣ । ସିଧା ଦେଇଚନ୍ତୁ ଦେଖୁନ । ଖାଲି ଅଟା ଆଉ ଡାଲି । ଏତେ ବଡ଼ ବାହାଘର । ଆଉ କହୁନାହିଁ ।

ମୂଷାଟି ମଇଁଷି ପାଖରେ ଶୋଇ ସବୁ ଶୁଣୁଥାଏ । ସେ ଭାବିଲା—ଏଇଟା ଉତ୍ତମ ସମୟ । ତାର ସେ ସୁଯୋଗ ନେବ । ଏଇ ମଇଁଷିଟିର ଦେଇ ସେ ନିଜକୁ ରକ୍ଷାକରିବ ।

ମୂଷାଟି ପାଲିର୍କି ବାହକଙ୍କ ସାଥିରେ ଆଲୋଚନାରେ ଯୋଗ ଦେବ ବୋଲି ସ୍ଥିର କଲା । ତାପରେ କହିଲା—"ବାହାଘରରେ ନାଜିମତ ଲୋକଙ୍କୁ ଭଲ ଖାଇବାକୁ ଦେବା ଉଚିତ । ମୁଁ ବୁଝୁଛି, ତମର ଚିନ୍ତା ସେମାନେ କରିନାହାନ୍ତି । ଦୁଃଖ କରି ଲାଭ ନାହିଁ ମୁଁ ତମକୁ ପଟେ ମଇଁଷି ଦେଉଛି, ନିଅ । ଭୋଜି କରି ଖାଅ ।"। ପାଲିର୍କି ବାହକ ଦେଖିଲେ—ମୂଷାଟି ଅନାୟାସରେ ସବୁକଥା କହି ଯାଉଛି । ମୂଷା କଥା ତାଙ୍କ ମନକୁ ପାଇଲାନାହିଁ । ଗ୍ଲୋଟ ମୁହଁରେ ବଡ଼ କଥା । ସେମାନେ ହସିଲେ ।

ଜଣେ କହିଲା "ତୁ ଗ୍ଥର ମୂଷାଟାଏ । ଅତି କ୍ଷୁଦ୍ର ଜୀବ । ତୁ କେମିତି ମଇଁଷିର ମାଲିକ ହେବୁ ।"

ମୋଟାଶା ମଇଁଷିର ମାଲିକ ବୋଲି କହି ସମ୍ମାନ ପାଇଲା ନାହିଁ । ବରଂ ଥଟ୍ଟା, ବିଦ୍ରୂପ ଓ ତାଚ୍ଛଲ୍ୟର ଶିକାର ହେଲା । ଲୋକଙ୍କର ବିଶ୍ୱାସ—ଜଣେ ଗ୍ଲୋଟହେଲେ ବଡ଼ ଜିନିଷର ଅଧିକାରୀ ସେ ହୋଇପାରିବ ନାହିଁ । ସେ ଏଇମତର ଦୃଢ଼ ପ୍ରତିବୋଧୀ । କିନ୍ତୁ ଏଇନେ ପ୍ରତିବାଦ କଲେ ଫଳ ଓଲଟା ହେବ । ଯେଉଁ ସୁବିଧା ସେ ହାସଲ କରିବାକୁ ଚାହୁଁଛି, ତା କରି ହେବନାହିଁ । ସେ ଅବିଚଳିତ ଭାବରେ କହିଲା—"ମୋତେ ଗୋଟିଏ ଗବଡ଼ ଏଇ ଏଇ ମଇଁଷିଟି ଦେଇଛି । ଧନଯାକ ମୁଁ ତାକୁ ଚରାଉଛି ।

ତମର ଯଦି ଅବିଶ୍ୱାସ ହେଉଛି, ଦେଖୁନ, ମଇଁଷିର ପଘା ମୋ ବେକରେ ବନ୍ଧା ହୋଇଛି ।"

ପାଲଙ୍କ ବାହକମାନେ ଗୃହଆଡ଼କୁ ଗୃହିଁଲେ । ଦେଖିଲେ—କେହି କେଉଁଠି ନାହିଁ । କିନ୍ତୁ ମଇଁଷିର ଦଉଡ଼ି ମୂଷା ବେକରେ ବନ୍ଧା ହୋଇଅଛି । ମଇଁଷି ମଧ୍ୟ ମୂଷା କଥାରେ ଆପତ୍ତି କରୁନାହିଁ ସେମାନେ ସମସ୍ତେ ପାଟିକଲେ, "ଆମକୁ ଏଇ ମଇଁଷିଟା ଦେ । ଆମେ ଭୋଜିକରି ଖାଇବୁ । ମୋଟାଶା ତାର ତୀକ୍ଷ୍ଣ ଦାନ୍ତରେ ମଇଁଷିର ଦଉଡ଼ି କାଟି ପକାଇଲା । ତା ପରେ କହିଲା "ଯାଅ ଏହାକୁ ନେଇ ଭୋଜିକରି ଖାଅ ।"

ପାଲଙ୍କ ବାହକମାନଙ୍କର ଖୁସି କହିଲେ ନ ସରେ । ସେମାନେ ଟିକିଏ ବି ଅପେକ୍ଷା କଲେନାହିଁ । ଖଣ୍ଡା ବାହାର କରି ମଇଁଷି ବେକକୁ ପାହାରେ ଦେଲେ । ମଇଁଷିଟି ପ୍ରତିବାଦ କରିବା ପୂର୍ବରୁ ତାର ପ୍ରାଣବାୟୁ ଉଡ଼ିଯାଇଥିଲା । ସେମାନେ ମଇଁଷି ମାଂସରେ ଖୁବ୍ ବଢ଼ିଆ ଭୋଜିକଲେ । ଆନନ୍ଦରେ ଖାଇପିଇ ଘରକୁ ବାହାରିଲେ ।

ଗଲାବେଳେ ଜଣେ କହିଲା "ହେ ମୂଷା, ଆମେ ତ ମାଂସ ଖାଇଲୁ । ତୁ ଏଥର ମଇଁଷିର ହାଡ଼ତକ ଖାଇଦବୁ ।"

ମୋଟାଶା ରାଗରେ ଜଳିଗଲା । କହିଲା—"ତମେ ଉପାସରେ ଆସିଥିଲ । ଖାଲି ରୁଟି ଖାଇଥାନ୍ତ । ତମକୁ ମୁ ଦୟାକଲି । ମୋ ମଇଁଷି କୋଡ଼ିଏ ସେର ଦୁଧ ଦିଏ । ସେକଥା ଭାବିଲି ନାହିଁ । ତମକୁ ସନ୍ତୁଷ୍ଟ କରିବାକୁ ସେଇଟି ଦେଲି । ତୁମେ ଆନନ୍ଦରେ ଖାଇଲ, ସେଥି ପାଇଁ ତମମାନଙ୍କର ମୋ ପ୍ରତି ଶ୍ରଦ୍ଧା ତ ନାହିଁ ବରଂ ଥଟ୍ଟା କରୁଛ । ତମେ ସବୁ ଅଭଦ୍ର । କୃତଘ୍ନ । ଅବିବେକୀ । ତମେ ଏଥର ମୋତେ ମୋ ମଇଁଷିର ଦାମ ଦେଇଦିଅ ।"

ମୂଷାର କଥାରେ ଥିଲା ଗମ୍ଭୀରତା ଆଉ ଦୃଢ଼ତା । ପାଲିଙ୍କି ବାହକମାନେ ଏପଟ ସେପଟ ହେଲେ । ସମସ୍ତେ ଚୁପ୍ ।

ମୂଷାଟି କହିଲା "ଖଣ୍ଡେ ଚେର ବଦଳ ଚକଟା ଅଟା ମେଞ୍ଚେ ପାଇଲି । ଚକଟା ଅଟାତକ ଦେଇ ଠେକା, ଆଉ ଠେକା ବଦଳରେ ମଇଁଷି ପାଇଛୁ । ତମେ ଯଦି ମଇଁଷି ନେଲ, ବୋହୂଟି ମତେ ଦେଇଦେଉନ ।"

ମୂଷା କଥାରେ ସେମାନେ ବିବ୍ରତ ହେଲେ ନାହିଁ । ବରଂ ତା କଥା ତାଙ୍କୁ ଆନନ୍ଦ ଦେଲା । ଏତିକିବେଳେ ଜଣେ କହିଲା "ବେଳ ଗଡ଼ିଗଲାଣି ବୋଲି ଦେଖୁଛ ତ ? ବର ଘରେ ଆମକୁ ଅପେକ୍ଷା କରି ବ୍ୟସ୍ତ ହୋଇ ଆସୁଥିବେ । ଦେଖିବେ, ଆମେ ଏଠି ଖେଳୁଛୁ କରି ଖାଇଛୁ । ସେମାନେ ତ ରାଜାଘରର ଲୋକ । ଆମକୁ ଏଠି ଟିକିଟିକି କରି କାଟି ପକାଇବେ । ଚାଲ ପଳାଇଯିବା । କହିବା—ଝିଅକୁ ବାଘ ନେଇଗଲା ।"

କଥାଟା ସମସ୍ତଙ୍କ ମନକୁ ପାଇଲା । ସେମାନେ ଭୟରେ ସେଠୁ ପଳାଇଗଲେ । ବାକି ରହିଲେ ମୋଟାଣୀ ଓ ପାଲିଙ୍କିରେ ବସିଥିବା ବୋହୂଟି । ମୋଟଣୀ ଆଉ ହେଲା କଲାନାହିଁ । ଆସ୍ତେ ଆସ୍ତେ ପାଲିଙ୍କି ପାଖକୁ ଗଲା । ପରଦା ଆଡ଼େଇ ପାଲିଙ୍କି ଭିତରେ ପଶିଲା । ବୋହୂଟିର ବୟସ ଅଳ୍ପ । ଖୁବ୍ ସୁନ୍ଦର । ମୂଲ୍ୟବାନ ଅଳଙ୍କାରରେ ଭୂଷିତା । ମୂଷାଟିକୁ ବୋହୂ ଆଖିରେ ଆଶ୍ୱସ୍ତିର ଚିହ୍ନ । ସମ୍ଭବ, ଏକୁଟିଆ ହୋଇ ଭାଙ୍ଗିପଡ଼ିଥିଲା । ମୂଷାଟିକୁ ଦେଖି ସାହସ ଆସିଲା । ବୁଢ଼ି ମଲାବେଳେ କୁଟା ଖିଅ ପାଇଲା ପରି ।

ମୋଟାଣୀ କହିଲା 'ପାଲିଙ୍କି ବାହକମାନେ ପଳେଇଗଲେଣି । ସେମାନେ ମୋଠାରୁ ମଇଁଷିଟିଏ ନେଇ ଖାଇଲେ । ତା ବଦଳ

ତମକୁ ଦେଇଗଲେ । ଏଥର ତମେ ମୋ ପଛେ ପଛେ ଆସ । ଘରକୁ ଯିବା ।"

ବୋହୂଟି ପଦାକୁ ଆସି ଦେଖିଲା—ସତକୁ ସତ ପାଲିଙ୍କି ବାହକମାନେ ପଳେଇଗଲେଣି । ସେ ଏକୁଟିଆ । ଜଙ୍ଗଲ ଜାଗା । ସେ କିଂ କର୍ତ୍ତବ୍ୟବିମୂଢ଼ା, ଉପାୟଶୂନ୍ୟା, ଭୀତା ଓ ତ୍ରସ୍ତା । ତେଣୁ ମୂଷା ସାଥିରେ ଯିବାକୁ ରାଜି ହେଲା ।

ଆଗେ ଆଗେ ମୂଷା । ପଛେ ପଛେ ବୋହୂଟି । ଦେଖିବାକୁ ସେ ତ ସହଜେ ସୁନ୍ଦରୀ । ସେଥିରେ ପୁଣି ଦାମିକିଆ ଶାଢ଼ୀ ଓ ଗହଣା ପିନ୍ଧିଛି । ସେ ଦେଖିବାକୁ ସୁନ୍ଦର ଦେଖାଯାଉଥାଏ ।

ମୋଟାଶା ତାକୁ ଦେଖି ଭାବୁଥାଏ—ସେ ଭାରି ଭାଗ୍ୟବାନ । ମୁଲେଇବାରେ ଓସ୍ତାଦ । ଶେଷକୁ କେଡ଼େ ବଢ଼ିଆ ବୋହୂଟିଏ ପାଇଲା । ଭାଗ୍ୟରେ ଥିଲେ ଏସବୁ ମିଳେ । ଏମିତି ଭାବି ଭାବି ଚାଲୁ ଚାଲୁ ସେମାନେ ଗାତ ମୁହଁରେ ପହଞ୍ଚି ଯାଇଥିଲେ । ମୂଷାଟି ମୁଣ୍ଡକୁ ତାର ନୁଆଇଁ କହିଲା "ତମକୁ ମୁଁ ନିମନ୍ତ୍ରଣ କରୁଛି । ତମେ ଏଇ ହୀନ ଦରିଦ୍ର କୁଡ଼ିଆରେ ପାଦ ପକାଅ । ଆସ୍ତେ କରି ଓହ୍ଲାଅ । ବାଟଟା ଅନ୍ଧାର । କିନ୍ତୁ ଅସୁବିଧା କିଛି ନାହିଁ । ମୋ ପଛରେ ଧୀରେ ଧୀରେ ଆସ ।"

ଏତକ କହି ମୂଷାଟି ଗାତ ଭିତରକୁ ପଶିଗଲା । କିଛି ସମୟ ଗାତ ଭିତରେ ସେ ଅପେକ୍ଷା କଲା । କିନ୍ତୁ ବୋହୂଟି ତା ପଛରେ ଗଲା ନାହିଁ । ସେ ମନେ ମନେ ରାଗିଗଲା । ପଦାକୁ ଆସି ଚଡ଼ାଗଳାରେ କହିଲା "ଭିତରକୁ କାହିଁକି ଆସୁ ନାହିଁ ? ଆମେ ସ୍ୱାମୀମାନେ ଅପେକ୍ଷା କରିବାକୁ ପସନ୍ଦ କରୁନାହିଁ ।"

ବୋହୂଟି ନମ୍ର ସ୍ୱରରେ କହିଲା, "ମୁଁ ତ ଖୁବ୍ ଡେଙ୍ଗା । ଗାତଟି ଅତି ଛୋଟ । ଗାତ ଭିତରେ ମୁଁ ପଶି ପାରିବି ନାହିଁ ।"

ମୋଟାଶା ପ୍ରକୃତ କଥା ଏଥର ବୁଝିପାରିଲା । ଟିକିଏ ଚିନ୍ତା କରି କହିଲା "ଆଚ୍ଛା, ତମେ ରହିବା ପାଇଁ ମୁଁ ଗୋଟିଏ ଘର କରିଦେବି । ତମେ ଆଜି ରାତିକ ଏଇ ଗଛ ମୂଳରେ ରହିଯାଅ ।"

ବୋହୂଟି ଦୀର୍ଘନିଶ୍ୱାସ ପକାଇ କହିଲା "ମୋତେ ଭାରି ଭୋକ କରୁଛି ।"

ମୂଷା କହିଲା "ଆଜି ତ ଆମେ ସମସ୍ତେ ଉପାସ । ବ୍ୟସ୍ତ ହୁଅ ନାହିଁ । ତମପାଇଁ ମୁଁ କିଛି ଖାଦ୍ୟ ଆଣି ଦେଉଛି ।"

ସାଙ୍ଗେ ସାଙ୍ଗେ ସେ ଗାତ ଭିତରେ ପଶିଗଲା । ସାଥିରେ ଗୋଟାଏ ଶୁଖିଲା ମଟରଛୁଇଁ ଆଉ କେତେକ ଗହମ ଦାନା ଧରି ପଦାକୁ ବାହାରି ଆସିଲା । କହିଲା-"ଶସ୍ୟପରି ବଢ଼ିଆ ଖାଦ୍ୟ ଆଉ କିଛି ନାହିଁ । ହେଇ ନିଅ । ଏହାକୁ ଖାଅ ।"

ବୋହୁଟି କହିଲା—"ମଣିଷ ଏସବୁ ଖାଏ ନାହିଁ । ସେ ରୁଟି, ଘିଅ, ଲଡ଼ୁ ଓ ଜଳଖିଆ ଖାଏ ।"

ମୋଟାଶା ରାଗିଯାଇ କହିଲା—"ସ୍ତ୍ରୀ ଲୋକମାନେ ବଦମାସ । ସବୁ କଥାରେ ତାଙ୍କର ପ୍ରତିବାଦ । କୌଣସି କଥା ତାଙ୍କ ମନକୁ ପାଏ ନାହିଁ ।" ଟିକିଏ ଅଟକି ଯାଇ ପୁଣି କହିଲା "ଆଚ୍ଛା, ଏସବୁ ଯଦି ରୁଚୁ ନାହିଁ, ଗଛରୁ କୋଳି ଖାଉନ ?"

ବୋହୂଟି କହିଲା "କୋଳି ଗୁଡ଼ିକ ପାଚିନାହିଁ । କଞ୍ଚା କୋଳି ମଣିଷ ଖାଏ ନାହିଁ ।"

ମୋଟାଶା କହିଲା—"ପାଚୁ ନ ପାଚୁ । ତମକୁ ଆଜି ତାକୁଇ ଖାଇବାକୁ ହେବ । ସକାଳ ହେଉ । ମୁଁ କୋଳି ବଜାରକୁ ନେଇଯିବି । ତାକୁ ବିକି ତମପାଇଁ ଘିଅ, ରୁଟି, ଲଡ଼ୁ, ଜଳଖିଆ ଆଉ କେତେ ବଢ଼ିଆ ଜିନିଷ ନେଇ ଆସିବି ।"

ବୋହୂଟିର ରାଜି ହେବା ଛଡ଼ା ଅନ୍ୟ ଉପାୟ କିଛି ନଥିଲା ।

ସେ ଆଉ କଛି କହିଲା ନାହିଁ । ସେଇ ଗଛ ମୂଳରେ ଶୋଇପଡ଼ିଲା ।

ପରଦିନ ସକାଳ । ମୂଷା ଗଛରେ ଚଢ଼ି ବହୁତ ପାଚିଲା କୋଳି ପକାଇଦେଲା । କହିଲା—"ଯାଅ, କାନରେ ଏସବୁ କୋଳି ନେଇଯାଅ । ବଜାରରେ ବିକି ତମ ଇଚ୍ଛା ଯାହା ହେବ ତାହା କିଣି ଆଣିବ ।"

ବୋହୂଟି ମୂଷା କଥା ମାନି କୋଳିତକ ଧରି ବଜାରକୁ ବାହାରିଲା । ପଛେ ପଛେ ମୂଷା । ବୋହୂଟି ତ ରାସ୍ତା ଜାଣିଥିଲା । ସେ ତାର ନିଜ ରାଜଧାନୀକୁ ଗଲା । ମୂଷା ତ ଏକଥା ଜାଣେ ନାହିଁ । ତା ପଛେ ପଛେ ଯାଇ ରାଜଧାନୀରେ ହାଜର । ବଜାରରେ ବୋହୂଟି ଡାକୁଥାଏ—"କିଏ ନେବ କଞ୍ଚା କୋଳି ଆସ । ରାଜଜେମା ଆଜି ମୂଷାର ବୋହୂ । ସେ କୋଳି ଆଣିଛି, କିଏ ନେବ ନିଅ ।"

ଏଣେ ରାଣୀ ଜ୍ୱାଇଁ ଘରୁ ଖବର ପାଇଲେ ଯେ, ଝିଅକୁ ବାଟରେ ବାଘ ଖାଇ ଦେଇଛି । ପାଲିଙ୍କି ବାହକମାନେ ଜୀବନ ବିକଳରେ ପଳାଇ ଆସି ଖବର ଦେଇଛନ୍ତି । ରାଜା ରାଜା ରାଣୀ ଲୋକ ପଠାଇଲେ । ସେମାନେ ଯାଇ ପାଲିଙ୍କିଟି ଖାଲି ପଡ଼ିଥିବାର ଦେଖି ଆସିଲେ ।

ଏ ସବୁ ଶୁଣି ରାଣୀ ବିଛଣା ଲଗି । ହଠାତ୍ ଝିଅର ପାଟି ଶୁଣି ଚମକି ପଡ଼ିଲେ । ପଦାକୁ ଆସି ଦେଖିଲେ ଝିଅ ତାଙ୍କର କୋଳି ନେଇଯାଉଛି । ଦାସୀମାନଙ୍କୁ ପଠାଇ ତାକୁ ଉଆସକୁ ନେଇଆସିଲେ ।

ପୁରଆଡ଼େ ଚହଳ ପଡ଼ିଗଲା—ରାଜଜେମା ଫେରି ଆସିଛନ୍ତି । ଏ ଖବର ପାଇ ସମସ୍ତେ ଖୁସି । ରାଣୀ ଜେମାକୁ ସଙ୍ଗୋଳି ନେଲେ ।

ପାଖରେ ବସାଇ ସବୁ କଥା ତା ଠାରୁ ଶୁଣିଲେ ।

ମୂଷାଟ ଦୂରରେ ରହି ସବୁ ଦେଖୁଥିଲା । ଝିଅଟି ପଦାକୁ ଆଉ ନ ଆସିବାରୁ ନଅର ଦୁଆରକୁ ଯାଇ ମୁଷାଟି ଚିତ୍କାର କଲା । ସ୍ତ୍ରୀକୁ ତାର ଡାକିଲା । ଦୁଆର ମୁହଁରେ ହଟ୍ଟଗୋଳ । ଅନେକ ଲୋକ ଜମା ହୋଇଗଲେ । ମୁଷାଟି ଜେମାଙ୍କୁ ତାର ହୃଦୟର ରାଣୀ ବୋଲି ସମ୍ବୋଧନ କରୁଥିବାର ଦେଖିଲେ । ତା କଥା ଶୁଣି ଲୋକେ ହସିଲେ ।

ରାଣୀ ମଧ୍ୟ ଯାଇ ଦୁଆରେ ହାଜର । ମୂଷାଟିର ଢଙ୍ଗ ଢାଙ୍ଗ ଦେଖି ତାଙ୍କୁ ଲାଜ ମାଡ଼ିଲା । ସେ ରାଗିଗଲେ ସତ, କିନ୍ତୁ କିଛି ପ୍ରକାଶ କଲେ ନାହିଁ ।

ରାଇଜର ରାଣୀ ସେ । ଶାସନ କପଟ ହୁଏ, ତାଙ୍କୁ ଜଣା । କୌଶଳ କରି ସମସ୍ତଙ୍କୁ ଅକ୍ତିଆର କରିବାକୁ ହୁଏ । ସାମନା-ସାମନି ଗଣ୍ଡଗୋଳରେ ନୁହେଁ । ସେଥିପାଇଁ ସେ ମୂଷା ପାଖକୁ ଯାଇ କହିଲେ “ ଆହା ବିଚରା ଜ୍ୱାଇଁଟା ମୋର । ତମ ସଙ୍ଗେ ତମ ସ୍ତ୍ରୀ ନିଶ୍ଚୟ ଯିବ । ଯେତେବେଳେ ତମେ ଆମର ଜ୍ୱାଇଁ । ଘରକୁ ଆସ । ଗାଲିଚା ବିଛାଇ ଦେଇଛି, ସେଠି ବସ । ବାହାଘର ପାଇଁ ଭୋଜି କରିବ । ଜାକଜମକରେ ତମକୁ ବିଦାୟ ଦେବ । ଟିକିଏ ଅପେକ୍ଷା କର ।”

ମୋଟାଶା ଏକଥା ଶୁଣି ଗର୍ବ ଅନୁଭବ କଲା । ମନ ତାର କୁଣ୍ଢେ ମୋଟ । ସେ ସେଠି ଅପେକ୍ଷା କଲା ।

ରାଣୀ ହଠାତ୍ ସୁନ୍ଦରଇରଖା ଷ୍ଟୁଲଟିଏ ଆଣିଲେ । ତାର ମଝିଟି ତ କଣା । ସେଇ କଣା ତଳକୁ ଗୋଟିଏ ତତଲା ପଥର ରଖିଦେଲେ । କଣାଟି ଆବରଣ କରିବା ପାଇଁ ଗ୍ଲେଟ ପତଳା ଟିଣଟିଏ ପକାଇଦେଲେ । ତା ଉପରେ ସୁନ୍ଦର ଫୁଲପକା ନାଲି

ଆସନଏଏ ବସ୍ଥାଇଦେଲେ । ଷ୍ଟୁଲ ତଳକୁ ଗୋଟିଏ ନିଆଁ ଉହ୍ମେଇ ରଖାଗଲା । ସବୁ ପ୍ରସ୍ତୁତ ହେବାପରେ, ଦାସଦାସୀଙ୍କ ଗହଣରେ ରାଣୀ ଦୁଆର ମୁହଁକୁ ଆସିଲେ । ସେଠାରେ ମୁଷାକୁ ଉଚ୍ଛ୍ୱସିତ ସମ୍ବର୍ଦ୍ଧନା ଦିଆଗଲା । ରାଣୀ ନିଜେ ମୁଷାକୁ ହାତରେ ଧରି ଶୋଭା ଯାତ୍ରାରେ ଆଗେ ଆଗେ ଚାଲୁଥାଆନ୍ତି । ବାଟଯାକ ତାକୁ ଆଶୀର୍ବାଦ କରୁଥାଆନ୍ତି ।

ମୋଟାଣା ଏପରି ସମ୍ବର୍ଦ୍ଧନାରେ ଅଭିଭୂତ । ଭାବୁଥାଏ—ସେ କେଡେ ଚାଲାକ । ମୁଣ୍ଡେଇବାରେ ସେ କେମିତି ପାରଙ୍ଗମ । ବର୍ତ୍ତମାନ ସେ ରାଜକନ୍ୟାର ସ୍ୱାମୀ । ଏକଥା ତାର ସାଙ୍ଗଭାଇମାନେ ଜାଣିଲେ, ଈର୍ଷାରେ ମରିଯିବେ । କ'ଣ ବୋଲି କଣ କହିବେ ।

ରାଣୀ ତାକୁ ନେଇ ସଜା ହୋଇଥିବା ଷ୍ଟୁଲ ଉପରେ ଛାଡ଼ିଦେଲେ । ସେ ବସିବା ମାତ୍ରେ ତାକୁ ଗରମ ଜଣାଗଲା । ସେ ଗରମ ଅସହ୍ୟ । ସେ ତ ଜ୍ୱାଇଁ, ଅସ୍ଥିର ହେଲେ ଅସୁନ୍ଦର ହେବ । ଏପଟେ ଦେହ ଜଳିଯାଉଥାଏ । ସେ ଆଉ ସହି ପାରିଲାନାହିଁ । ରାଣୀଙ୍କୁ କହିଲା—"ମା ଏଠି ଭାରି ଗରମ । ଏ ଆସନରେ ବସିବାରୁ ମୋ ଦେହ ଖାଲି ଜଳିଯାଉଛି ।"

ରାଣୀ କହିଲେ—"ବାବୁରେ, ଏ ଗରମରେ ମଣିଷ ଅଭ୍ୟସ୍ତ । ତମେ ସହିପାରୁନ । ମୁଁ ଝରକା ଖୋଲିଦେଉଛି । ପବନ ଆସିବ । ତମେ ଟିକିଏ ଷ୍ଟୁଲ ମଝିକୁ ଚାଲିଆସ । ଥଣ୍ଡା ଲାଗିବ ।"

ମୋଟାଣା ରାଣୀଙ୍କ କଥାମାନି ମଝିକୁ ଯେମିତି ଆସିଛି, ସେ ସିଧା ନିଆଁ ଉହ୍ମେଇ ଉପରକୁ ଆସିଗଲା । ତଳକୁ ଲମ୍ବିଯାଇଥିବା ଲାଙ୍ଗୁଡ଼ିଟିରେ ତାର ନିଆଁ ଲାଗିଗଲା ।

ସକାଳରେ ମୁଷାଟି ଷ୍ଟୁଲ ଉପରୁ ତଳକୁ ଡେଇଁ ପଡ଼ିଲା । ତାପରେ ଝରକାବାଟେ ଜୀବନ ବିକଳରେ ବାହାକୁ ଆସିଗଲା ।

ମୁହୂର୍ତ୍ତେ ବି ସେଠାରେ ଅପେକ୍ଷା ନ କରି ଦୌଡ଼ିବାକୁ ଆରମ୍ଭ କଲି । ଦୌଡ଼ି ଦୌଡ଼ି ଗଲାବେଳେ କହୁଥାଏ, 'ଆଉ ନୁହେଁ । ଆଉ ଜମାରୁ ନୁହେଁ । ଜୀବନରେ ଆଉ କେବେହେଲେ ମୁଁ ଲେଇବି ନାହିଁ ।"

—o—

## ଚତୁର ମିରାସୀ

ପଞ୍ଜାବରେ ମିରାସୀ ନାମକ ଏକ ପ୍ରକାର ଜାତିର ଲୋକ ରହୁଥିଲେ । ସେମାନଙ୍କ ସମ୍ପର୍କରେ ବହୁ ପ୍ରସିଦ୍ଧ କାହାଣୀ ରହିଛି । ସେହି ମିରାସୀ ଲୋକମାନଙ୍କର ଗୀତ ଗାଇବା କଳା ଅନନ୍ୟ । ସେମାନେ ଗୀତ ଗାଇ ଅନ୍ୟକୁ ମୁଗ୍‌ଧ କରି ଦିଅନ୍ତି । ତା ଛଡ଼ା ସେମାନେ ଅତ୍ୟନ୍ତ ଚତୁର । ଉପସ୍ଥିତ ବୁଦ୍ଧି ସମ୍ପନ୍ନ ।

ଥରେ ଜଣେ ରାଜା ଥିଲେ । ତାଙ୍କୁ ବହୁତ ଦିନ ଧରି ନିଦ ହେଉନାହିଁ । ସେ ବହୁତ ବୈଦ୍ୟ ଓ କବିରାଜମାନଙ୍କ ପାଖରେ ଚିକିତ୍ସିତ ହେଲେ । ମୁଣ୍ଡର ବାଳ ଓ ପାଦର ଗୋଇଠିରେ ତେଲ ମାଲିସ କରି କରି ଲୋକମାନେ ଥକିଲେ କିନ୍ତୁ କିଛି ବି ଲାଭ ହେଉନାହିଁ ।

ଜଣେ ଲୋକ ତାଙ୍କୁ ପରାମର୍ଶ ଦେଲେ—"ଯଦି ମହାରାଜାଙ୍କୁ କେହିଜଣେ ଅସରନ୍ତି କାହାଣୀ କହିବ, ତାକୁ ଶୁଣି ଶୁଣି ମହାରାଜାଙ୍କୁ ନିଦ ଆସିଯିବ ।"

ରାଜ୍ୟସାରା ପ୍ରଚାର କରାଗଲା ଯେ ଯଦି କେହି କାହାଣୀଶୁଣେଇ ରାଜାଙ୍କୁ ଶୁଆଇ ଦେଲେ ରାଜା ତାଙ୍କୁ ତାର ଇଚ୍ଛା ମୁତାବକ ପୁରସ୍କାର ଦେବେ, କିନ୍ତୁ ଯଦି କାହାଣୀ ଶୁଣିକରି ବି ତାଙ୍କର ନିଦ ନ ଆସିବ ତେବେ ସେହି କାହାଣୀ ଶୁଣେଇବା ଲୋକର ମୁଣ୍ଡ ନଣ୍ଡା କରାଯିବ । ମୁହଁର ଗୋଟେପଟେ ଚୂନ ଓ ଆରପଟେ କଳାକରି ଗଧ ଉପରେ ବସାଇ ପୁରା ସହରରେ ବୁଲାଯିବ ।

ଏହି ଘୋଷଣା ଶୁଣି କେତେଲୋକ ପୁରସ୍କାର ଲୋଭରେ

କାହାଣୀ ଶୁଣେଇବାକୁ ଆସିଲେ । କିଏ ପାଞ୍ଚଟା କାହାଣୀ ଶୁଣେଇଲା ତ କିଏ ଦଶଟା କାହାଣୀ ଶୁଣାଇଲା । ତାପରେ ତାଙ୍କର କାହାଣୀ ସରିଗଲା । ରାଜାଙ୍କୁ ନିଦ ଆସିଲା ନାହିଁ । କାହାଣୀ କହୁଥିବା ଲୋକମାନଙ୍କ ମୁହଁରେ ଚୂନ କଳା ବୋଳି ନଣ୍ଡାକରି ଗଧ ଉପରେ ବସାଇ ସହର ସାରା ବୁଲାଗଲା ।

ସେହି ସହରରେ ଜଣେ ମିସ୍ତ୍ରୀ ରହୁଥିଲା । ସେ ନିଜ ବୁଦ୍ଧି ବଳରେ ବଡ଼ ବଡ଼ ଲୋକଙ୍କୁ ହରାଇ ଦିଏ । ସେଥିପାଇଁ ତାର ଖ୍ୟାତି ଖୁବ୍ । ଯେତେବେଳେ ସେ ଏ ଖବର ଶୁଣିଲା, ସେ ନିଜକୁ ମୋଡ଼ିକି ତା ପାଖ ଲୋକଙ୍କୁ କହିଲା, "ଯଦି ମୁଁ କାହାଣୀ ଶୁଣେଇ ରାଜାଙ୍କୁ ନ ଶୁଆଇ ଦେବି, ତେବେ ମୋ ନାମ ତୁମେ ବଦଳେଇ ଦେବ ।"

ମିସ୍ତ୍ରୀ ରାଜାଙ୍କ ପାଖକୁ ଗଲା । ତାଙ୍କୁ କହିଲା, "ମୁଁ ଆଜି ରାତିରେ ମହାରାଜଙ୍କୁ ଏମିତି ଏକ କାହାଣୀ ଶୁଣେଇବି, ଯାହା ଶୁଣି ମହାରାଜାଙ୍କୁ ସଙ୍ଗେ ସଙ୍ଗେ ନିଦ ଆସିଯିବ । କିନ୍ତୁ ଗୋଟିଏ ସର୍ତ୍ତ ଅଛି । କାହାଣୀ ଶୁଣିବା ସମୟରେ ରାଜାଙ୍କୁ 'ହିଁ' 'ହିଁ' କହିବାକୁ ପଡ଼ିବ ।"

ଏଥର ମିସ୍ତ୍ରୀ ତା କାହାଣୀ ଆରମ୍ଭ କଲା—"ବହୁତ ପୁରୁଣା କଥା । ସେତେବେଳେ ମୋ ବାପାର ବାପାର ବାପ ବଞ୍ଚିଥିଲେ । ଦିନେ ମୋ ବାପାର ବାପାର ବାପା ଜଙ୍ଗଲ ବୁଲିବାକୁ ଗଲେ । ସାଙ୍ଗରେ ମୋ ବାପାର ବାପା ମଧ୍ୟ ଥିଲେ । ସେ ଜଙ୍ଗଲରେ କେତୋଟା ଗଛ ଥିଲା । ପ୍ରତି ଗଛରେ ଦଶ ଦଶଟା ପଞ୍ଜୁରୀ ଝୁଲୁଥିଲା ।'

"ହିଁ, ତାପରେ କ'ଣ ହେଲା ?" କାହାଣୀ ଶୁଣୁଥିବା ରାଜା ପଚାରିଲେ "ପ୍ରତି ପଞ୍ଜୁରିରେ ଦଶ ଦଶଟି ଚଢ଼େଇ ଥିଲେ ।"

"ହୁଁ"

"ମୋ ବାପାର ବାପାର ବାପା ଭାବିଲେ କି ସବୁଯାକ ଚଢ଼େଇଗୁଡ଼ା

ଖାଲଟାରେ ପଞ୍ଜୁରି ଭିତରେ ରହି କଷ୍ଟ ପାଉଛନ୍ତି, ଏମାନଙ୍କୁ ମୁକ୍ତ କରିଦେବା ଉଚିତ ।"

"ହୁଁ"

"ସେ ଗୋଟିଏ ପଞ୍ଜୁରୀର କବାଟ ଖୋଲି ଦେବାରୁ ସେଥିରେ ଥିବା ଚଢ଼େଇମାନେ ଫୁର୍‌କରି ଉଡ଼ିଗଲେ ।"

"ହୁଁ"

"ପୁଣି ଦ୍ୱିତୀୟ ପଞ୍ଜୁରୀ ଖୋଲିଲେ । ସେଥିରେ ଥିବା ଚଢ଼େଇମାନେ ଫୁର୍‌କରି ଉଡ଼ିଗଲେ ।"

"ହୁଁ"

"ପୁଣି ତୃତୀୟ ପଞ୍ଜୁରୀ ଖୋଲିଲା ପରେ ଥିବା ଚଢ଼େଇମାନେ ଫୁର୍ କରି ଉଡ଼ିଗଲେ ।

"ହୁଁ"

ମିରସୀ ଏହିପରି ଭାବେ ପଞ୍ଜୁରି ଖୋଲି ସେଥିରେ ଥିବା ଚଢ଼େଇମାନେ ଉଡ଼ିଯିବା କଥା ବାରମ୍ବାର କହିବାରେ ଲାଗିଲେ । ଏହା ଏହା ଭିତରେ ରାଜାଙ୍କୁ ନିଦ ଲାଗିଗଲା ।

ପରଦିନ ସକାଳ । ଯେତେବେଳେ ରାଜାଙ୍କର ନିଦ ଭାଙ୍ଗିଲା । ଏହା ଦେଖି ରାଜା ଆଶ୍ଚର୍ଯ୍ୟ ଚକିତ । ମିରସୀ ସେ ପର୍ଯ୍ୟନ୍ତ କାହାଣୀ ଶୁଣେଇ ଚାଲିଛି ।

"ଭଲଲୋକତ ତମେ ! ଏ ପର୍ଯ୍ୟନ୍ତ ତମ କାହାଣୀ ସରିନ ?" ରାଜା କହିଲେ । "ସରିବ କପରି ? ମହାରାଜଙ୍କୁ ମୁଁ ତ କହିଥିଲି ଯେ ଶହେ ଗଛରେ ହଜାରେ ପଞ୍ଜୁରି ଝୁଲୁଥିଲା । ବର୍ତ୍ତମାନ ଯାଏଁ ପଚିଶ ପଞ୍ଜୁରୀର କବାଟ ଖୋଲା ହୋଇଛି । ବାକି ପଞ୍ଜୁରୀରେ ଚଢ଼େଇମାନେ ଏପର୍ଯ୍ୟନ୍ତ ବନ୍ଦୀହୋଇ ଅଛନ୍ତି । ତାଙ୍କୁ ବି ତ ଉଡ଼େଇବାକୁ ପଡ଼ିବ !"

ମିରସୀର ଚତୁରତା ଦେଖି ରାଜା ଖୁବ୍ ଖୁସି । ସେ ମିରସୀକୁ ତା ଇଚ୍ଛା ମୁତାବକ ପୁରସ୍କାର ଦେଇ ବିଦା କରିଦେଲେ ।

—୦—

# ପୃଥିବୀର ଲୋକକଥା

(୧) ଭିଏତ ନାମ, (୨) ଲାଦାଖ-୧, (୩) ଲାଦାଖ-୨, (୪) ପଞ୍ଜାବ-୧ (୫) ପଞ୍ଜାବ-୨, (୬) ପଞ୍ଜାବ-୩, (୭) ପଞ୍ଜାବ-୪, (୮) ପଞ୍ଜାବ-୫, (୯) ଉତ୍ତର ପ୍ରଦେଶ-୧, (୧୦) ଉତ୍ତପ୍ରଦେଶ-୨, (୧୧) ପଞ୍ଜାବ-୬, (୧୨) ଉତ୍ତର ପ୍ରଦେଶ-୩, (୧୩) ପଞ୍ଜାବ-୭, (୧୪) ଉତ୍ତର ପ୍ରଦେଶ-୪, (୧୫) ମଧ୍ୟ ପ୍ରଦେଶ-୧, (୧୬) କାଶ୍ମୀର-୧, (୧୭) ଆସାମ-୧, (୧୮) କାଶ୍ମୀର-୨, (୧୯) କାଶ୍ମୀର-୩, (୨୦) ଇହୁଦୀ-୧ (୨୧) ହିମାଚଳ ପ୍ରଦେଶ-୧, (୨୨) ଆସାମ-୨, (୨୩) ଶ୍ରୀଲଙ୍କା-୧, (୨୪) ରଷିଆ-୧, (୨୫) ଇହୁଦୀ-୨, (୨୬) ସାନ୍ତାଳ-୧ (୨୭) ଇଟାଲି-୧, (୨୮) ମଧ୍ୟ ପ୍ରଦେଶ-୨, (୨୯) ଶ୍ରୀଲଙ୍କା-୨, (୩୦) ସାନ୍ତାଳ-୨, (୩୧) ସାନ୍ତାଳ-୩, (୩୨) ସାନ୍ତାଳ-୪, (୩୩) ସାନ୍ତାଳ-୫) (୩୪) ସାନ୍ତାଳ-୬, (୩୫) ସାନ୍ତାଳ-୭, (୩୬) ନେପାଳ-୧, (୩୭) ହରିୟାନା-୧, (୩୮) ସାନ୍ତାଳ-୮, (୩୯) ସାନ୍ତାଳ-୯, (୪୦) ସାନ୍ତାଳ-୧୦, (୪୧) ସାନ୍ତାଳ-୧୧, (୪୨) ସାନ୍ତାଳ-୧୨, (୪୩) ସାନ୍ତାଳ-୧୩, (୪୪) ସାନ୍ତାଳ-୧୪, (୪୫) କନ୍ଧ-୧, (୪୬) ନେପାଳ-୨ (୪୭) ତିବ୍ବତ-୧, (୪୮) ଇହୁଦୀ-୩, (୪୯) ଇହୁଦୀ-୪, (୫୦) ଜାପାନ-୧ (୫୧) ତାମିଲ୍‌ନାଡୁ-୧, (୫୨) ତାମିଲ୍‌ନାଡୁ-୨, (୫୩) ତାମିଲ୍‌ନାଡୁ-୩, (୫୪) ତିବ୍ବତ-୨, (୫୫) ଫିଲ୍‌ପାଇନ୍-୧, (୫୬) ଫିଲ୍‌ପାଇନ୍-୨, (୫୭) ଚୀନ୍-୧, (୫୮) ଫ୍ରାନ୍‌ସ-୧, (୫୯) ଫ୍ରାନ୍‌ସ-୨ (୬୦) ସ୍କଟ୍‌ଲ୍ୟାଣ୍ଡ୍-୧ ।

ନୀଳକଣ୍ଠେଶ୍ୱର ଶିକ୍ଷା ପ୍ରକଳ୍ପ
ପୋ.: ଦିଘାଳ, ଜିଲ୍ଲା : ପୁରୀ
ମହାନ୍ତିପଡ଼ା, କାଫଲା, କଟକ-୨

ପ୍ରାପ୍ତି ସ୍ଥାନ : ଗ୍ରନ୍ଥାଳୟ, ପଥିକ, ଭୁବନେଶ୍ୱର, ପଦ୍ମାଳୟା, ବାଦାମବାଡ଼ି, କଟକ ଟ୍ରେଡ଼ିଂ କମ୍ପାନୀ, ବାଲୁବଜାର, କଟକ ।